# ଶ୍ରମ ଆଇନରୁ ଜଂଗଲ ଆଇନ୍

''ଶ୍ରମ ଆଇନ୍‌ର ଇତିହାସ ଭାରତ ବର୍ଷରେ ପୁଂଜିବାଦ ଆକ୍ରମଣ ବିରୁଦ୍ଧରେ ଶ୍ରମିକ ଶ୍ରେଣୀର ବିରାମ ବିହୀନ ଓ ନିରନ୍ତର ମୁକ୍ତି ସଂଗ୍ରାମର ଇତିହାସ ଅଟେ ।'' ବିଚାରପତି ଡି.ଏ. ଦେଶାଇଙ୍କର ଏହି ଉକ୍ତି ରେ ସତ୍ୟତା ପୂରି ରହିଛି । ଉପସ୍ଥିତ ଆଇନର ଧାରା ଉପଧାରା ଗୁଡ଼ିକରେ ଯେଉଁ ଯତ୍ କିଂଚିତ ସୁବିଧା ସୁଯୋଗ ଶ୍ରମିକ ଆଜି ଉପଭୋଗ କରୁଛି, ଏହା ପ୍ରତିଟି କ୍ଷେତ୍ରରେ ଦୀର୍ଘ ଓ ଦୂରୁହ ଶ୍ରମିକ ଅନ୍ଦୋଳନର ପରିଣତି ଅଟେ ।

ଆମେ ଦେଶର ବଡ଼ ବଡ଼ ଶିଳ୍ପପତି ଓ ବ୍ୟବସାୟୀ ଗୋଷ୍ଠି ମାନଙ୍କ ପକ୍ଷରୁ ବାରମ୍ବାର ଶ୍ରମ ଆଇନ ଗୁଡ଼ିକର ପ୍ରତିକୁଳ ସଂଶୋଧନ ପାଇଁ ଚେଷ୍ଟା ଚାଲି ଆସିଛି । ପ୍ରଥମରେ ଏହାର ଲକ୍ଷ ହେଉଛି, ସଂଗଠିତ ତଥା ରେଜିଷ୍ଟ୍ରିଭୁକ୍ତ ଟ୍ରେଡ ୟୁନିୟନମାନଙ୍କ ସାମନାରେ ଆଇନଗତ ପ୍ରତିବନ୍ଧକ ସୃଷ୍ଟି କରିବା । ଦ୍ୱିତୀୟରେ ଯାହାକିଛି ଆଇନଗତ ଅଧିକାର ଓ ସୁବିଧା ସୁଯୋଗ ଶ୍ରମିକ ପାଇଁ ଅଛି, ଏହାକୁ ଅଚଳ କରିବା । ଶ୍ରମିକ ଆନ୍ଦୋଳନ ଦିନକୁ ଦିନ ବୃଦ୍ଧି ପାଉଛି । ଶ୍ରମିକ ଆନ୍ଦୋଳନକୁ ଖର୍ବ କରି ଶୋଷଣକୁ ଅବାରିତ କରିବା ହିଁ, ପୁଂଜିପତିମାନଙ୍କର ଚିରାଚରିତ କୌଶଳ ଅଟେ ।

କେନ୍ଦ୍ର ଶାସନରେ ପ୍ରତିଷ୍ଠିତ ଭାରତୀୟ ଜନତା ପାର୍ଟି ପରିଚାଳିତ ମେଣ୍ଟ ବଡ଼ ବଡ଼ ଶିଳ୍ପପତି ଓ ବ୍ୟବସାୟୀମାନଙ୍କ ନିର୍ଦ୍ଦେଶ ପାଳନ ପାଇଁ ଅଙ୍ଗିକାରବଦ୍ଧ ହୋଇଛି । ବହୁ ଜାତୀୟ କଂପାନୀମାନେ ମଧ୍ୟ ଟ୍ରେଡ ୟୁନିୟନ ଅଧିକାର ଓ ଆଇନଗତ ସୁରକ୍ଷା ଗୁଡ଼ିକୁ ସେମାନଙ୍କ ସ୍ୱାର୍ଥ ବିରୋଧୀ ମନେ କରୁଛନ୍ତି । ତେଣୁ ସେମାନେ ବାଜପେୟୀ ସରକାରକୁ ଶ୍ରମିକମାନଙ୍କ ଅଧିକାର ଉପରେ ଆକ୍ରମଣ ଚଳେଇବା ପାଇଁ ପ୍ରେରିତ କରୁଛନ୍ତି ।

ଏହି ପୃଷ୍ଠଭୂମିରେ ବାଜପେୟୀ ସରକାର ଶ୍ରମ ଆଇନ ଗୁଡ଼ିକୁ ମାଲିକମାନଙ୍କ ସପକ୍ଷରେ ସଂଶୋଧନ କରିବା ପାଇଁ ଏକ ପରେ ଏକ ପଦକ୍ଷେପ ଗହଣ କରି ଚାଲିଛି । ଶ୍ରମିକ ଓ ତାର ଟ୍ରେଡ ୟୁନିୟନ ଆନ୍ଦୋଳନକୁ ପଂଗୁ କରିବା ପାଇଁ ଷଡ଼ଯନ୍ତ୍ର କରୁଛନ୍ତି । ବିଶ୍ୱବ୍ୟାଙ୍କ

ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ନିକଟରେ ବାଜପେୟୀ ସରକାରର ଆତ୍ମ ସମର୍ପଣ ଏବଂ ସେମାନଙ୍କ ନିର୍ଦ୍ଦେଶମୁତାବକ ଆକ୍ରମଣ ପରିଚାଳିତ ହେଉଛି ।

ଅତୀତରେ ମଧ୍ୟ ଶ୍ରମ ଆଇନକୁ ମାଲିକମାନଙ୍କ ସପକ୍ଷରେ ବଦଳେଇବା ପାଇଁ ବହୁବାର ଚେଷ୍ଟା ହୋଇଛି । କିନ୍ତୁ ପ୍ରତିଥର ଶ୍ରମିକ ଶ୍ରେଣୀର ମିଳିତ ଆନ୍ଦୋଳନ ଏପରି ଅପଚେଷ୍ଟାକୁ ପ୍ରତିହତ କରିଛି । ପୁଂଜିପତି ଶ୍ରେଣୀର ନିର୍ଦ୍ଦେଶକ୍ରମେ କେନ୍ଦ୍ର ସରକାର ଅତୀତର ଦୁଇ ଦଶନ୍ଧି ସାରା ଶ୍ରମ ଆଇନ ଗୁଡ଼ିକ ବଦଳେଇବା ପାଇଁ ବହୁବାର ଚେଷ୍ଟା କରିଛନ୍ତି । ପ୍ରତ୍ୟେକବାର ଏହି ପ୍ରୟାସ ବିରୁଦ୍ଧରେ ଶ୍ରମିକମାନଙ୍କୁ ମିଳିମିଶି ପ୍ରତିରୋଧ କରିବାକୁ ପଡ଼ିଛି ।

ବିଗତ ୧୯୭୮ ବେଳକୁ କେନ୍ଦ୍ର ସରକାର କୁଖ୍ୟାତ ଶିଳ୍ପ ସଂପର୍କ ବିଲ୍ ମାର୍ଫତ ଆଇନ ପରିବର୍ତ୍ତନ ପାଇଁ ପ୍ରଥମ ଚେଷ୍ଟା କରିଥିଲେ । ଏକ ବିଲ ତତ୍କାଳିନ ଶ୍ରମମନ୍ତ୍ରୀ ରବିନ୍ଦ୍ର ବର୍ମା ୧୯୭୮ ଅଗଷ୍ଟ ମାସ ୧୬ ତାରିଖ ଦିନ ଲୋକସଭାରେ ଆଗତ କରିଥିଲେ । ହସ୍‌ପିଟାଲ ଓ ଶିକ୍ଷା ପ୍ରତିଷ୍ଠାନର କର୍ମଚାରୀମାନଙ୍କ ସେବା ସର୍ତ୍ତାବଳୀ ଓ ବିବାଦ ସମାଧନ ବିଲ୍ ନାଁରେ ମଧ୍ୟ ଅନ୍ୟଏକ କୁଖ୍ୟାତ ବିଲ୍ ଲୋକସଭାକୁ ଅଣା ଯାଇଥିଲା । ଏହି ସଂଶୋଧନ ବିରୁଦ୍ଧରେ ଶ୍ରମିକମାନଙ୍କର ମିଳିତ ଆନ୍ଦୋଳନ ଆରମ୍ଭ ହୋଇଥିଲା । ପ୍ରବଳ ପ୍ରତିରୋଧ ଯୋଗୁ, ସରକାର ଦୁଇଟି ଯାକ ବିଲ୍‌କୁ ପାର୍ଲ୍ୟାମେଣ୍ଟକୁ ସବ-କମିଟିର ବିଚାର ପାଇଁ ପଠାଇଥିଲେ । ପରବର୍ତ୍ତି ଅବସ୍ଥାରେ ଲୋକସଭା ଭଙ୍ଗହେବା ସଙ୍ଗେ ସଙ୍ଗେ ବିଲ୍ ଦୁଇଟି ଅକାମି ହେଲା ।

ପୁନର୍ବାର ଦ୍ୱତୀୟ ଥର ଶିଳ୍ପ ବିବାଦ ସଂଶେଧନ ବିଲ୍ ନାଁରେ ଫେବ୍ରୁଆରୀ ୧୯୮୨ରେ ଏକ ବିଲ୍ ଲୋକସଭାରେ ଆଗତ କରାଯାଇଥିଲା । ଏଥି ସଙ୍ଗେ ସଙ୍ଗେ ଟ୍ରେଡ୍ ୟୁନିୟନ ସଂଶୋଧନ ବିଲ୍ (୧୯୮୨) ମଧ୍ୟ ଅପ୍ରିଲ ୧୯୮୨ରେ ରାଜ୍ୟସଭା ରେ ଆଗତ ହେଲା । ସେହି ବର୍ଷ ମେ ମାସରେ ହସ୍‌ପିଟାଲ ଓ ଅନ୍ୟାନ୍ୟ ସଂସ୍ଥା ସମ୍ପର୍କରେ ଏକ ବିଲ୍ ରାଜ୍ୟସଭାରେ ଆଗତ ହେଲା । ଚତୁର୍ଥରେ, ମଜୁରୀ ପ୍ରଦାନ ଆଇନର ସଂଶୋଧନ ବିଲ୍ ମଧ୍ୟ ଆଗତ ହେଲା । ଶ୍ରମିକ ଆନ୍ଦୋଳନ ସଂଶୋଧନ

ଗୁଡ଼ିକୁ ବିରୋଧ କରିଥିଲା । ଜାତୀୟ ଅଭିଯାନ କମିଟି (NCC) ର ମିଳିତ ଟ୍ରେଡ ୟୁନିୟନ ମଂଚ଼ ପକ୍ଷରୁ ଏହି ସଂଶୋଧନ ଗୁଡ଼ିକ ବିରୁଦ୍ଧରେ ଦେଶବ୍ୟାପୀ ଆନ୍ଦୋଳନ କରାଯାଇଥିଲା ।

ସରାକର ୧୯୮୮ ରେ ପୁର୍ନବାର ଟ୍ରେଡ ୟୁନିୟନ ଓ ଶିଳ୍ପ ବିବାଦ ଆଇନ ସଂଶୋଧନ ନାଁରେ ଏକ ବିଲ୍ ୧୯୮୮ ମଇ ମାସରେ ରାଜ୍ୟ ସଭାରେ ଆଗତ କରିଥିଲେ । କଂଗ୍ରେସ (ଇ) ଦଳର ଶ୍ରମମନ୍ତ୍ରୀ ଏହି ବିଲ୍ ସନତ୍ ମେହେତା କମିଟି ରିପୋର୍ଟ ଭିତ୍ତିରେ ଆଗତ କରିଥିଲେ । ଏହି କମିଟି ୧୯୮୨ରେ ଗଠିତ ହୋଇଥିଲା ଏବଂ ଏହାର ସୁପାରିଶ ୧୯୬୯ ସାଲରେ ପ୍ରଥମ ଜାତୀୟ ଶ୍ରମ କମିସନ ସୁପରିଶ ଭିତ୍ତିରେ ପ୍ରସ୍ତୁତ କରାଯାଇଥିଲା । ଜାତୀୟ ପ୍ରଚ଼ାର ଅଭିଯାନ କମିଟି (NCC) ମଂଚ଼ରୁ ଟ୍ରେଡ ୟୁନିୟନ ମାନେ ମିଳିତଭାବେ ସଂଶୋଧନକୁ ବିରୋଧ କରିଥିଲେ । ସରକାର ପ୍ରତିରୋଧ ଫଳରେ ଆଗତ ବିଲ ପ୍ରତ୍ୟାହାର କରିଥିଲେ ।

ସେତେବେଳେ ଜାତୀୟ ପ୍ରଚ଼ାର ଅଭିଯାନ କମିଟିରେ ସି.ଆଇ.ଟି.ୟୁ., ଏ.ଆଇ.ଟି.ୟୁ.ସି., ଏଚ଼.ଏମ୍.ଏମ୍., ବି.ଏମ.ଏସ., ୟୁ.ଟି.ୟୁ.ସି., ୟୁ.ଟି.ୟୁ.ସି. (ଲେସ୍) ଓ ଟି.ୟୁ.ସି.ସି. ପ୍ରଭୃତି ସାମିଲ ଥିଲେ । ସେମାନେ ୧୯୮୨ ସେପ୍ଟେମ୍ବର ମାସ ୧୭-୧୮ ତାରିଖରେ ଅନୁଷ୍ଠିତ ତ୍ରିପାକ୍ଷିକ କମିଟି ବୈଠକକୁ ବାସନ୍ଦ କରିଥିଲେ । ସନତ୍ ମେହେତା କମିଟିର ରିପୋର୍ଟ କୁ ପ୍ରତ୍ୟାଖ୍ୟାନ କରିଥିଲେ । ଇଣ୍ଡିଆନ ଲେବର କନ୍‌ଫେରେନ୍ସର ୨୬ତମ୍ ବୈଠକରେ ମଧ ପ୍ରଥମ ଶ୍ରମ କମିସନ ରିପୋର୍ଟକୁ ଟ୍ରେଡ ୟୁନିୟନମାନେ ପ୍ରତ୍ୟାଖ୍ୟାନ କରିଥିଲେ ।

ପରବର୍ତ୍ତୀ ଅବସ୍ଥାରେ, ସରକାର ରାମାନୁଜମ୍ କମିଟି ନାଁରେ ଏକ ଦ୍ୱିପାକ୍ଷିକ କମିଟି ଗଢ଼ି ସମସ୍ତ ବିଷୟ ବିଚ଼ାରଭୁକ୍ତ କଲେ । ୧୯୯୦ ମଇ ମାସରେ ଅନୁଷ୍ଠିତ ଇଣ୍ଡିଆନ ଲେବର କନଫେରେନ୍ସ ଏହି କମିଟି ଗଠନ କରିଥିଲା । ଏଥିରେ ଟ୍ରେଡ ୟୁନିୟନ ଓ ମାଲିକମାନଙ୍କ ପ୍ରତିନିଧି ଥିଲେ । ନୂତନ ଶିଳ୍ପ ସଂପର୍କ ବିଲ୍ ନେଇ ସୁପାରିଶ କରିବା ପାଇଁ କମିଟିକୁ ନିର୍ଦ୍ଦେଶ ଦିଆଯାଇଥିଲା । ଏହି କମିଟି ୧୯୯୦ ଅକ୍ଟୋବର ମାସରେ ନିଜ ରିପୋର୍ଟ

ଦେଇଥିଲା । ସୁପାରିଶ ଗୁଡ଼ିକ ମଧ୍ୟ ସର୍ବ ସମ୍ମତ ନଥିଲା । ସି.ଆଇ.ଟି.ୟୁ., ଏ.ଆଇ.ଟି.ୟୁ.ସି. ଓ ଅନ୍ୟାନ୍ୟ ବାମପନ୍ଥୀ ଟ୍ରେଡ ୟୁନିୟନମାନେ ନିଜ ନିଜର ଭିନ୍ନମତ ଦେଇଥିଲେ ।

ରାମାନୁଜମ୍ କମିଟି ରିପୋର୍ଟରେ ବହୁ ଶ୍ରମିକ ବିରୋଧୀ ସୁପାରିଶ୍ ଥିଲା । କୌଣସି ରେଜିଷ୍ଟ୍ରିଭୁକ୍ତ ଟ୍ରେଡ ୟୁନିୟନରେ କେନ୍ଦ୍ରିୟ ଟ୍ରେଡ ୟୁନିୟନ ନେତାଙ୍କ ରହିପାରିବା ନେଇ କଟକଣା ଥିଲା । କ୍ଲୋଜାର, ଛଟେଇ ଓ ଲେ ଅଫ ଉପରେ ଥିବା ପ୍ରତିବଂଧକ ଗୁଡ଼ିକୁ ଉଠାଇ ଦିଆ ଯାଇଥିଲା । ଶ୍ରମ ବିରୋଧର ଶ୍ରମ ଆଇନ ଲାଗୁ କରିବା ନେଇ କ୍ଷମତା, ଲେବର ଟ୍ରିବ୍ୟୁନାଲ ଆଜିର କ୍ଷମତାକୁ ଶିଳ୍ପ ସଂପର୍କ କମିସନ ନାମକ ନୂଆ ସଂସ୍ଥା ଅଧିନକୁ ଆଣିବା ପାଇଁ ସୁପାରିଶ କରାଯାଇଥିଲା । ଧର୍ମଘଟ ଉପରେ ଯାବତୀୟ ଅଂକୁଶ ଖଂଜା ଯାଇଥିଲା । ଧର୍ମଘଟ ପାଇଁ ଦୁଇ ତୃତୀୟାଂଶ ମତାମତ ସଂଗ୍ରହକୁ ବାଧ୍ୟତା ମୂଳକ କରାଯାଇଥିଲା ।

ଏହି ସଂପର୍କରେ ସି.ଆଇ.ଟି.ୟୁ.ର ପ୍ରତିଷ୍ଠାତା ସଭାପତି କମ୍ରେଡ଼ ବି.ଟି. ରଣଦିଭେ ୧୯୮୨ରେ ଲେଖିଥିଲେ, ‘‘ଟ୍ରେଡ ୟୁନିୟନ ଓ ଶିଳ୍ପ ବିବାଦ ସଂଶୋଧନ ବିଲ୍ ସିଧା ସଳଖ ଶ୍ରମିକମାନଙ୍କ ଉପରେ ଆକ୍ରମଣ କରୁଛି । ବିଲ୍‌ରେ ଟାଳଟୁଳ କରିବା ବା ଏବେ ନୁହେଁ ପରେ ବୋଲି କିଛି ନାହିଁ ବରଂ ଅତ୍ୟନ୍ତ ଲଜ୍ୟାଜନକଭାବେ ଶ୍ରମିକ ମାନଙ୍କ ସଂଗଠନ ଓ ସେମାନଙ୍କ ଶକ୍ତିକୁ ଖର୍ବ କରିବା ପାଇଁ ଚେଷ୍ଟା କରିଛି । କୌଣସି ଟ୍ରେଡ ୟୁନିୟନ ର ପଂଜିକରଣ ଦରଖାସ୍ତ ନିଜ କ୍ଷେତ୍ରରେ ୧୦ ଭାଗ ଶ୍ରମିକ ସଂଗ୍ରହ କଲେ ଯାଇ ରେଜିଷ୍ଟ୍ରେସନ ପାଇବ, ଏହା ଟ୍ରେଡ ୟୁନିୟନ ଗଢ଼ିବା ଅଧିକାରକୁ ବେଆଇନ କରିବା ସଂଗେ ସମାନ ଅଟେ । ଧୀରେ ଧୀରେ ସ୍ୱାଧୀନ ଓ ଲଢୁଆ ଟ୍ରେଡ ୟୁନିୟନ ସଂଗଠନ ଗଢ଼ି ଉଠିବା ସମ୍ଭାବନାକୁ ବାତିଲ କରିବା ଲକ୍ଷରେ ଏହା ପରିଚ଼ାଳିତ ହେବ ।’’

ବାଙ୍ଗାଲୋରଠାରେ ୧୯୮୨ ଜୁଲାଇ ମାସ ୨୩-୨୫ ତାରିଖ ଯାଏ ସି.ଆଇ.ଟି.ୟୁ. କାର୍ଯ୍ୟକାରୀ କମିଟିର ବୈଠକ ମଧ୍ୟ ଶ୍ରମିକ ବିରୋଧୀ ଆଇନ ସଂଶୋଧନ ସଂପର୍କରେ ଆଲୋଚ଼ନା କରି ଥିଲା :

‘‘ଏକଚାଟିଆ ପୁଂଜିପତି ପରିବାର ମାନଙ୍କୁ ଶ୍ରମିକ ଶୋଷଣ ବିନିମୟରେ ଏବଂ ସମଗ୍ର ସମାଜର କଲ୍ୟାଣ ଓ ଦେଶର ଆତ୍ମନିର୍ଭରଶୀଳତାକୁ ଜଳାଞ୍ଜଳୀ ଦେଇ ବହୁ ଜାତୀୟ କଂପାନୀଙ୍କ ସହ ଅବୈଧ ପ୍ରଣୟକୁ ରୂପ ଦେବାପାଇଁ ସରକାର ଶିଳ୍ପ ନୀତିକୁ ବଦଳେଇ ଦେଇଛନ୍ତି । ଏହାହିଁ ଆଗତ ହୋଇଥିବା ଟ୍ରେଡ ୟୁନିୟନ ଓ ଶିଳ୍ପ ବିବାଦ ସଂଶୋଧନ ବିଲ୍‌ର ପୃଷ୍ଠଭୂମି ଅଟେ । ଦେଶ ଘୋର ଆର୍ଥିକ ସଂକଟ ଭିତର ଦେଇ ଗତି କରୁଛି । ସରକାର ଆନ୍ତର୍ଜାତିକ ମୁଦ୍ରା ପାଣ୍ଠି ଓ ବିଶ୍ୱବ୍ୟାଙ୍କ ପାଦତଳେ ଆତ୍ମ ସମର୍ପଣ କରିଛନ୍ତି । ଏଣୁ ଏହି ବିଲ୍ ସମହାରରେ ଟ୍ରେଡ ୟୁନିୟନ ଆନ୍ଦୋଳନର ତଣ୍ଟି କାଟିବା ପାଇଁ ଏବଂ ଶ୍ରମିକମାନଙ୍କ ପ୍ରତିରୋଧକୁ ଖର୍ବ କରିବା ପାଇଁ ଉଦ୍ୟତ ଅଟେ । ପ୍ରଚଳିତ ବ୍ୟବସ୍ଥାର ସଙ୍କଟକୁ ହିଁ ଏହି ସଂଶୋଧନୀ ବିଲ୍ ପ୍ରତିଫଳିତ କରୁଛି । ଶାସକ ଶ୍ରେଣୀ ନିଜର ମୁନାଫା ଅର୍ଜନ ବୃଦ୍ଧି ପାଇଁ, ସଙ୍କଟର ବୋଝ ଶ୍ରମିକ ଶ୍ରେଣୀ ମୁଣ୍ଡ ଉପରକୁ ଠେଲି ଦେଉଛି । ଏହା ଶ୍ରମିକ ଶ୍ରେଣୀ ବୁଝିବା ଦରକାର ।’’

## ଦଶନ୍ଧିବ୍ୟାପୀ ଗୌରବମୟ ସଂଗ୍ରାମ

ବିଂଶ ଶତାବ୍ଦୀର ଅଶି ଦଶକ ସାରା ଭରତବର୍ଷରେ ଟ୍ରେଡ୍ ୟୁନିଅନ୍ ଆନ୍ଦୋଳନ ଶ୍ରମିକ ବିରୋଧୀ ଆଇନ ସଂଶୋଧନ ବିରୋଧରେ ଲଗାତାର ସଂଗ୍ରାମ ପରିଚାଳନା କରିଥିଲା । ଆନ୍ଦୋଳନ କ୍ଷେତ୍ରରେ ଏହା ଏକ ଉଲ୍ଲେଖଯୋଗ୍ୟ ଯୁଗ ଅଟେ । ୧୯୮୧ ଅଗଷ୍ଟ ୧୭ ତାରିଖ ଦିନ ଦେଶସାରା ଆଇନ ସଂଶୋଧନ ବିରୋଧରେ ଲକ୍ଷ ଲକ୍ଷ ଶ୍ରମିକ ବିକ୍ଷୋଭ ସଂଗଠିତ କରିଥିଲେ । ଏହା ପରେ ନଭେମ୍ବର ୨୩ ତାରିଖ ଦିନ ପାର୍ଲିଆମେଣ୍ଟ ସମ୍ମୁଖରେ ବିଶାଳ ଶ୍ରମିକ ସମାବେଶରୁ ୧୯୮୨ ଜାନୁଆରୀ ୧୯ ତାରିଖକୁ ଦେଶବ୍ୟାପୀ ଧର୍ମଘଟ ପାଇଁ ଆହ୍ୱାନ ଦିଆଯାଇଥିଲା । ଜାନୁଆରୀ ୧୯ ତାରିଖ ଦିନ ସଂଗଠିତ ଧର୍ମଘଟ ବ୍ୟାପକତା ଓ ପ୍ରଭାବ ଦୃଷ୍ଟିରୁ ଶ୍ରମିକ ଆନ୍ଦୋଳନ ଇତିହାସରେ ସ୍ମରଣୀୟ ଦିବସ ହୋଇ ରହିବ । କମ୍ରେଡ୍ ବି.ଟି. ରଣଦିଭେ ଓ ପି. ରାମମୂର୍ତ୍ତି ଏକ ମିଳିତ ପ୍ରେସ୍ ବିବୃତିରେ

ଶ୍ରମିକମାନଙ୍କୁ ଅଭୂତପୂର୍ବ ସଫଳତା ପାଇଁ ଅଭିବାଦ ଜଣାଇ ଥିଲେ । ''କଂଗ୍ରେସ ଶାସିତ ବିଭିନ୍ନ ରାଜ୍ୟରେ ସଂଗଠିତ ଦମନ, ଅତ୍ୟାଚାରକୁ ବେଖାତିର କରି ଜାତୀୟ ନିରାପତ୍ତା ଆଇନ ବଦଳରେ ୫୦ ହଜାର ଶ୍ରମିକଙ୍କୁ ଗିରଫ ହେବା, ପୋଲିସ୍‌ର ଲାଠିଚାର୍ଜ, ଗୁଳିଚାଳନା ଏବଂ କଂଗ୍ରେସ(ଇ) ଗୁଣ୍ଡାମାନଙ୍କ ଆକ୍ରମଣରେ ଶ୍ରମିକମାନେ ମୃତ୍ୟୁବରଣକୁ ବେଖାତିର କରି, ଲକ୍ଷ ଲକ୍ଷ ଶ୍ରମିକ ଜାନୁଆରୀ ୧୯ ଧର୍ମଘଟକୁ ଯେପରି ଅଭୂତପୂର୍ବ ଭାବେ ସଫଳ କରିଛନ୍ତି, ଏହା ଆମ ଦେଶର ମିଳିତ ଟ୍ରେଡ୍ ୟୁନିଅନ୍ ଆନ୍ଦୋଳନ ଇତିହାସରେ ସବୁଦିନ ପାଇଁ ଲିପିବଦ୍ଧ ହୋଇ ରହିବ ।'' ୧୯୮୨ ଜୁଲାଇ ୮ ତାରିଖ ଦିନ ପାର୍ଲିଆମେଣ୍ଟ ଅଧିବେଶନ ଆରମ୍ଭ ବେଳକୁ ହଜାର ହଜାର ଶ୍ରମିକମାନେ ବିଭିନ୍ନ ରାଜ୍ୟର ରାଜଧାନୀମାନଙ୍କରେ ପ୍ରବଳ ବିକ୍ଷୋଭ ସଂଗଠିତ କରିଥିଲେ । କୁଖ୍ୟାତ ଶିଳ୍ପ ସଂପର୍କ ବିଲ୍ ବିରୋଧରେ ୧୯୮୮ ମଇମାସ ୧୩ ତାରିଖ ଦିନ ପୁନର୍ବାର ଦେଶସାରା ପ୍ରବଳ ଶ୍ରମିକ ବିକ୍ଷୋଭ ସଂଗଠିତ ହୋଇଥିଲା । ୧୯୮୮ ଜୁଲାଇ ୧୪ ତାରିଖ ଦିନ ଦିଲ୍ଲୀରେ ୮ଟି କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନ୍ ଓ ବହୁ ସଂଖ୍ୟକ ଜାତୀୟ ଫେଡ଼େରେସନ୍ ପକ୍ଷରୁ ସର୍ବଭାରତୀୟ କନ୍‌ଭେନ୍‌ସନ୍‌ରେ ଦେଶବ୍ୟାପୀ ଧର୍ମଘଟ ଓ ପ୍ରତିବାଦ ସଭା ସଂଗଠିତ କରିବା ପାଇଁ ଡାକରା ଦିଆଯାଇଥିଲା । ୧୯୮୮ ଜୁଲାଇ ୨୭ ତାରିଖ ଦିନ ପାର୍ଲିଆମେଣ୍ଟ ଅଧିବେଶନର ପ୍ରଥମ ଦିନ ଦିଲ୍ଲୀରେ ଶ୍ରମିକମାନେ କୁଖ୍ୟାତ ବିଲ୍ ବିରୋଧରେ ପ୍ରବଳ ବିକ୍ଷୋଭ ସଂଗଠିତ କରିଥିଲେ ।

ଜାତୀୟ କ୍ୟାମ୍ପେନ୍ କମିଟି ନେତୃତ୍ୱରେ ପରିଚାଳିତ ମିଳିତ ଟ୍ରେଡ୍ ୟୁନିୟନ୍ ଆନ୍ଦୋଳନ ଶାସକ ଶ୍ରେଣୀର ହୀନ କୌଶଳକୁ ପଦାରେ ପକାଇ ଦେଇଥିଲା । କିନ୍ତୁ ପୁଞ୍ଜିପତି ଶ୍ରେଣୀ ସଙ୍କଟ ଜର୍ଜରିତ ଅର୍ଥ ବ୍ୟବସ୍ଥାରୁ କୌଣସି ଶିକ୍ଷା ଗ୍ରହଣ କରେ ନାହିଁ । ଭାରତବର୍ଷରେ ମଧ୍ୟ ଏହା ହିଁ ଘଟିଥିଲା । ଶ୍ରମିକ ଶ୍ରେଣୀ ଆନ୍ଦୋଳନ ସାମ୍ନାରେ ସେମାନେ ବାରମ୍ବାର ପଛଘୁଞ୍ଚା ଦେଇଥିଲେ ସୁଦ୍ଧା ଟ୍ରେଡ୍ ୟୁନିୟନ୍ ଅଧିକାର ଓ ଆଇନଗତ ସୁବିଧା ପ୍ରତ୍ୟାହାର ପାଇଁ ପୁନଃ ପୁନଃ ଚେଷ୍ଟା ଅବ୍ୟାହତ ରଖିଥିଲେ ।

# ବିଶ୍ୱ ବ୍ୟାଙ୍କ୍ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ନିକଟରେ ଆତ୍ମ ସମର୍ପଣ

ବିଗତ ୧୯୮୨ ଠାରୁ ଟ୍ରେଡ୍ ୟୁନିୟନ୍ ଅଧିକାର ଉପରେ ଦୁଇଦଶନ୍ଧି ବ୍ୟାପୀ କ୍ରୁର ଆକ୍ରମଣ ଅବ୍ୟାହ ରହିଛି । ୧୯୭୮ରେ କୁଖ୍ୟାତ ଶିଳ୍ପ ସଂପର୍କ ବିଲ୍ ପରେ ୧୯୮୨ରେ ୧୨ଟି ଶିଳ୍ପରେ ଧର୍ମଘଟକୁ ଜାତୀୟ ନିରାପତ୍ତା ଆଇନ (ESMA) ବଳରେ ବେଆଇନ କରାଇଥିଲା । ୧୯୮୨ ଏପ୍ରିଲ୍ ମାସରେ ପୁନଶ୍ଚ ଶିଳ୍ପ ବିବାଦ ସଂଶୋଧନ ବିଲ୍ ଆଗତ କରାଗଲା । ହସ୍ପିଟାଲ୍ ଓ ଅନ୍ୟାନ୍ୟ ସଂସ୍ଥାରେ ବିବାଦ ସମାଧାନ ବିଲ୍ ୧୯୮୨ ମଇମାସରେ ଆଗତ ହେଲା । ସି.ଆଇ.ଟି.ୟୁ. ସେତେବେଳେ ଶାସକ ଶ୍ରେଣୀ ପକ୍ଷରୁ ଆଗତ ପୁନଃ ପୁନଃ ଆକ୍ରମଣ ପଛରେ ଥିବା ରହସ୍ୟକୁ ସ୍ପଷ୍ଟ ଶବ୍ଦରେ ପ୍ରକାଶ କରିଥିଲା । " ଇନ୍ଦିରା ଗାନ୍ଧୀ ସରକାର ତାଙ୍କ ଋଣଦାତା ଯୁକ୍ତରାଷ୍ଟ୍ର ଆମେରିକା ପ୍ରତି ନିଜର ଆନୁଗତ୍ୟକୁ ପ୍ରମାଣ କରିବା ପାଇଁ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱବ୍ୟାଙ୍କରୁ ମିଳୁଥିବା ଋଣ ପାଇଁ, ଲଜ୍ୟାଜନକ ସର୍ତ୍ତାବଳୀକୁ ଗ୍ରହଣ କରିନେଇଛି; ଏବଂ ଏଇଥି ପାଇଁ ହିଁ ଶ୍ରମିକ ବିରୋଧରେ ବିଲ୍ ଅଣାଯାଇଛି ।" କଂଗ୍ରେସ (ଇ) ଦଳର ନରସିଂହ ରାଓ ସରକାର ଅମଳରେ ମଧ ସମାନ ପରିସ୍ଥିତି ଉପୁଜିଥିଲା । ସେତେବେଳେ ଆକ୍ରମଣ ଅଧିକ ନଗ୍ନଭାବେ ପରିଚାଳିତ ହେଲା । ନରସିଂହ ରାଓ ସରକାର ମୁଦ୍ରାପାଣ୍ଠି ନିର୍ଦ୍ଦେଶ ମତେ ୧୯୯୧ରେ "ନୂତନ ଆର୍ଥିକ ନୀତି" ଘୋଷଣା କଲେ । ସେହିଦିନ ଠାରୁ ଭାରତବର୍ଷର ବଡ଼ ବଡ଼ ପୁଞ୍ଜିପତି ପରିବାରମାନେ ବହୁଜାତୀୟ କମ୍ପାନୀମାନଙ୍କ ସାଙ୍ଗରେ ମିଶି ଶ୍ରମ ଆଇନ ସଂଶୋଧନ ସପକ୍ଷରେ ଜୋରଦୋଡ଼ ଉଦ୍ୟମ ଆରମ୍ଭ ଚଳେଇଥିଲେ ।

ଭାରତବର୍ଷ ଫଣ୍ଡ-ବ୍ୟାଙ୍କ୍ ଋଣ ଜାଲରେ ଆବଦ୍ଧ ହେବାପରେ ଶ୍ରମ ଆଇନ ସଂଶୋଧନ ପାଇଁ ୧୯୯୪ରେ ପ୍ରଥମ ପ୍ରଶ୍ୱାସ ଗ୍ରହଣ କଲା । ରାଜ୍ୟସଭାରେ ୧୯୯୪ରେ ଟ୍ରେଡ୍ ୟୁନିୟନ୍ ସଂଶୋଧନ ବିଲ୍ ନାଁରେ ଏକ ବିଲ୍ ଆଗତ ହେଲା । ତଦାନ୍ତିନ ଶ୍ରମମନ୍ତ୍ରୀ ପି.ଏ. ସାଙ୍ଗମା ଏହି ବିଲ୍‌ରେ

ଟ୍ରେଡ୍ ୟୁନିୟନ୍ ରେଜିଷ୍ଟ୍ରେସନ୍ ପାଇଁ ଅନ୍ୟୁନ ୧୦ ଭାଗ ଶ୍ରମିକଙ୍କ ଆବେଦନ ସର୍ତ୍ତାବଳୀ ରଖିଥିଲେ । ଶ୍ରମିକମାନଙ୍କ ୟୁନିୟନ୍ ଗଠନ ଅଧିକାର ଉପରେ ଅଙ୍କୁଶ ପ୍ରୟୋଗର ଏହି କୌଶଳ ପୁରୁଣା ଥିଲା । ଯାହାହେଉ ଶ୍ରମିକମାନଙ୍କ ପ୍ରବଳ ପ୍ରତିରୋଧ ଯୋଗୁଁ ଏହି ବିଲ୍ ପାସ୍ ହେଲା ନାହିଁ ।

# ତ୍ରିପାକ୍ଷିକ କମିଟିଗୁଡ଼ିକର ଅବନତି

ଆଜି ନୂଆ ଆର୍ଥିକ ନୀତିର ଆବରଣ ତଳେ ସରକାର ଖୋଲା ବଜାର ବ୍ୟବସ୍ଥା ଗ୍ରହଣ କରିବା ପରେ ବିଭିନ୍ନ ଶ୍ରମିକ ବିରୋଧୀ ଶକ୍ତି ସହ ହାତ ମିଳେଇ ଶ୍ରମ ଆଇନଗୁଡ଼ିକ ବିରୋଧରେ ଅହିତକାରୀ ପଦକ୍ଷେପମାନ ଗ୍ରହଣ କରୁଛନ୍ତି । ଏହି ଶକ୍ତିମାନେ ପ୍ରତ୍ୟେକଟି ତ୍ରିପାକ୍ଷିକ କମିଟିଗୁଡ଼ିକୁ ଅଚଳ କରିଦେଲେଣି । ଗତ ୧୯୯୬ ଜୁନ୍ ମାସ ବେଳକୁ ଏକ ସେମିନାର୍‌ରେ ମାସିକ ପକ୍ଷ ଦ୍ୱାରା ପ୍ରଭାବିତ ହୋଇ ଭାରତ ସରକାରଙ୍କ ତଦାନ୍ତିନ ମୁଖ୍ୟ ଶ୍ରମ କମିଶନର୍‌ଙ୍କ ପରିପତ୍ରରୁ ଏହାର ସୂଚନା ମିଳିଥିଲା । ସେହି ପରିପତ୍ରରେ କୁହାଯାଇଛି, ‘‘ସଂଗଠିତ ଶ୍ରମିକମାନଙ୍କୁ ରକ୍ଷା କରିବା ପାଇଁ ବ୍ୟବସାୟିକ ସ୍ୱାର୍ଥର ଜଳାଞ୍ଜଳି ଦେବା ଅନାବଶ୍ୟକ ଅଟେ ।’’ ‘‘କ୍ଲୋଜାର୍, ଛଟେଇ, ଲେ ଅଫ୍ କ୍ଷେତ୍ରରେ ସରକାର ଅନୁମତି ପ୍ରଦାନ ପୂର୍ବରୁ ସିଧାସଳଖ ଶ୍ରମିକମାନଙ୍କ ସହ ପରାମର୍ଶ’’ ସଂପର୍କରେ କେନ୍ଦ୍ର ଶ୍ରମ କମିଶନର୍ ବିରକ୍ତି ପ୍ରକାଶ କରିଥିଲେ । ‘‘ଉତ୍ପାଦନ କ୍ଷେତ୍ରରେ ପୁନର୍ଗଠନ ଓ ନୂଆ ସଂପର୍କ ସ୍ଥିର କରିବା ପାଇଁ ପ୍ରଚଳିତ ନିୟମାବଳୀ ଯେଉଁ କ୍ଷେତ୍ରରେ ପ୍ରତିବନ୍ଧକ ଓ ବିଳମ୍ବ ସୃଷ୍ଟି ପାଇଁ ଦାୟୀ, ଏହା ବଦଳିବା ଦରକାର’’ ଉପରେ ମଧ୍ୟ କମିଶନର୍ ଜୋର୍ ଦେଇଥିଲେ । ସେ ଅତ୍ୟନ୍ତ ନିର୍ଲଜ ଭାବେ ଶିଳ୍ପ ବିବାଦ ଆଇନର ଧାରା ୯-(ଅ)କୁ ତୁରନ୍ତ ବାତିଲ୍ କରିବା ସପକ୍ଷରେ ମତ ଦେଇଥିଲେ । ସେ କହିଥିଲେ, ଏହି ଧାରାରେ ଚାକିରି ସର୍ତ୍ତାବଳୀ ପରିବର୍ତ୍ତନ ପାଇଁ ବାଧ୍ୟତାମୂଳକ ପୂର୍ବ ନୋଟିସ୍ ଉଠିଯାଇ ମାଲିକମାନଙ୍କୁ ନିଜ ନିଜ କ୍ଷେତ୍ରରେ ସର୍ତ୍ତାବଳୀ ପରିବର୍ତ୍ତନ ପାଇଁ କ୍ଷମତା ମିଳିବା ଦରକାର । ସେ କ୍ଷେତ୍ରରେ ସେମାନେ ଶ୍ରମିକମାନଙ୍କ ପରାମର୍ଶ ସିଧାସଳଖ ଲୋଡ଼ିପାରିବେ । ସର୍ବୋଚ୍ଚ ଶ୍ରମ ବିଭାଗ କର୍ତ୍ତା ମାଲିକମାନଙ୍କ ସପକ୍ଷରେ ଯେପରି ଖୋଲା

ଓକିଲାତି କରିଛନ୍ତି, ଏହାର ଅଧିକ ବ୍ୟାଖ୍ୟା ଏଠାରେ ଅନାବଶ୍ୟକ ଅଟେ । ଘୋର ଶ୍ରମିକ ବିରୋଧୀ ଅମଲାମାନେ ଶ୍ରମ ବିଭାଗର ଉଚ୍ଚ ପଦବୀଗୁଡ଼ିକରେ ଅବସ୍ଥାପିତ ହୋଇଛନ୍ତି । ତେଣୁ ଉପସ୍ଥିତ ଆଇନ ବ୍ୟବସ୍ଥା ଶ୍ରମିକ ସ୍ୱାର୍ଥ ରକ୍ଷା ପାଇଁ କଡ଼ାକଡ଼ି ଭାବେ ଲାଗୁ ହେବ କିପରି ? ଏପରି ପରିସ୍ଥିତିରେ ସର୍ବତ୍ର ଶ୍ରମ ଆଇନଗୁଡ଼ିକୁ ଆଖିବୁଜି ଫାଙ୍କିବା ଚ଼ାଲିଛି ।

ଶ୍ରମ ସମ୍ମିଳନୀର ୩୬ତମ ଅଧିବେଶନରେ ମଧ୍ୟ ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀଙ୍କ ଉଦ୍‌ବୋଧନ, ଘୋର ଶ୍ରମିକ ବିରୋଧିତା ଓ ବିଜେପି ସରକାରର ପୁଞ୍ଜିପତି ପ୍ରେମକୁ ପ୍ରତିଫଳିତ କରିଥିଲା । ଏହି ଭାଷଣ ସଂପର୍କରେ ଏକଚ଼ାଟିଆ ପୁଞ୍ଜିପତିଙ୍କ ସମ୍ବାଦପତ୍ର ''ଶ୍ରମିକମାନଙ୍କ ପ୍ରତି ପ୍ରଧାନମନ୍ତ୍ରୀ ବିମୁଖ'' ଶିରୋନାମାରେ ସମ୍ବାଦ ଛାପିଥିଲେ । ବାଜପେୟୀ ଉଦ୍‌ବୋନ ଦେଇ କହିଥିଲେ, ''ଆମେ ଶ୍ରମ ଶକ୍ତିକୁ ଶକ୍ତିର ଉତ୍ସ ମନେ କରିବା ଦରକାର, କିନ୍ତୁ ଏହା ଅଯଥା ବୋଝ ହେବା ଅନୁଚ଼ିତ ।'' ବଜାର ଅବସ୍ଥା ବଦଳ ସାଙ୍ଗକୁ ଶ୍ରମିକମାନେ ମଧ୍ୟ ସହଜରେ ଅବସ୍ଥାପିତ ହେବା ଦରକାର । ଏହା ହେଉନଥିବା ଯୋଗୁ ଶିଳ୍ପ ରୁଗ୍‌ଣ ପାଲଟୁଛି । ଆଇନରେ ଦ୍ରୁତ ପରିବର୍ତ୍ତନ ନ ଆଣିଲେ ଆର୍ଥିକ ସୁଧାରରୁ ସଫଳ ମିଳିବ ନାହିଁ, ଇତ୍ୟାଦି ଇତ୍ୟାଦି । ଏହିପରି ଯାବତୀୟ ମିଥ୍ୟା ଅଭିଯୋଗ ସେ ତାଙ୍କ ଉଦ୍‌ବୋଧନରେ ଶ୍ରମିକମାନଙ୍କ ବିରୋଧରେ ବାଢ଼ିଥିଲେ । ଏହି ସର୍ବୋଚ୍ଚ ତ୍ରିପାକ୍ଷିକ କମିଟିରେ ବିଶାଳ ଗଣତାନ୍ତ୍ରିକ ଦେଶର ପଧାନମନ୍ତ୍ରୀ ଯେତେବେଳେ ଲଜ୍ଜ୍ୟାଜନକ ଭାଷଣ ଦେଉଛନ୍ତି, ସେତେବେଳେ ଶ୍ରମିକ ଶ୍ରେଣୀ ପାଖରେ ଶ୍ରେଣୀ ଭିତ୍ତିରେ ଏକଜୁଟ ହୋଇ ଶ୍ରେଣୀ ସଂଗ୍ରାମ ପରିଚ଼ାଳନା କରିବା ବ୍ୟତୀତ ଅନ୍ୟ କୌଣସି ପନ୍ଥା ନାହିଁ ।

## ବିଜେପି ଶାସନରେ ଆକ୍ରମଣର ନୂଆ ଜୁଆର

ବିଜେପି ପରିଚ଼ାଳିତ ମେଣ୍ଟ ସରକାର କ୍ଷମତାକୁ ଆସିବା ସାଙ୍ଗେ ସାଙ୍ଗେ ଶ୍ରମ ଆଇନଗୁଡ଼ିକୁ ଶୀଘ୍ର ପରିବର୍ତ୍ତନ କରିବେ ବୋଲି ଘୋଷଣା କରିଛନ୍ତି । ୧୯୯୮ ଡିସେମ୍ବର ୧୧ ତାରିଖ ଦିନ କେନ୍ଦ୍ର ସରକାରଙ୍କ ଶ୍ରମ ସଚ଼ିବ କନ୍‌ଫେଡ଼େରେସନ୍ ଅଫ୍ ଇଣ୍ଡଷ୍ଟ୍ରିଜ୍ (CII)ର ଦିଲ୍ଲୀରେ ଅନୁଷ୍ଠିତ ଏକ

ବୈଠକରେ ବିଜେପି ପରିଚାଳିତ ମେଣ୍ଟ ସରକାରଙ୍କ ଶ୍ରମ ଆଇନ ସମ୍ପର୍କୀୟ ନୀତିକୁ ବୟାନ କରିଥିଲେ । ମାଲିକମାନଙ୍କ ପ୍ରଶଂସା ଓ ତାଳିମାଡ଼ରେ ଉତ୍ସାହିତ ଶ୍ରମ ସଚିବ, ଶ୍ରମ ଆଇନ ଅତି ପୁରୁଣାକାଳିଆ ପାଲଟିଛି ଏବଂ ଖୋଲା ବଜାର ଆବଶ୍ୟକତାନୁଯାୟୀ ନମନୀୟ କରିବା ପାଇଁ ସରକାର ବଦ୍ଧ ପରିକର ଥିବା ପ୍ରକାଶ କରିଥିଲେ । ବୈଠକରେ ସେ ଘୋଷଣା କରିଥିଲେ ଯେ, ''ଆମେ ଶିଳ୍ପ ସଂପର୍କକୁ ପରିବର୍ତ୍ତନମୁଖୀ କରିବା ପାଇଁ ଚିଠା ପ୍ରସ୍ତୁତ କରିସାରିଛୁ ।'' ମୁଖ୍ୟ ମୁଖ୍ୟ ଶ୍ରମ ଆଇନ ତଥା ଶିଳ୍ପ ବିବାଦ ଆଇନ (୧୯୪୭), ଟ୍ରେଡ୍ ୟୁନିୟନ୍ ଆଇନ (୧୯୨୬), ଠିକା ଶ୍ରମ (ନିୟନ୍ତ୍ରଣ ଓ ଉଚ୍ଛେଦ) ଆଇନ (୧୯୭୦), ମଜୁରି ପ୍ରଦାନ ଆଇନ (୧୯୩୬), ବୋନସ୍ ପ୍ରଦାନ ଆଇନ (୧୯୬୫), ସରକାରଙ୍କ ସଂଶୋଧନ ତାଲିକାରେ ରହିଛି । ଶ୍ରମ ସଚିବ ସରକାରଙ୍କ ପକ୍ଷରୁ ବ୍ୟାପକ ଠିକା ଶ୍ରମ ବ୍ୟବସ୍ଥା ପ୍ରଚଳନ ମତଲବ୍‌କୁ ପ୍ରକାଶ କରିଥିଲେ । ସେ କହିଥିଲେ, 'ତାଙ୍କ ମନ୍ତ୍ରଣାଳୟ ସମସ୍ତ ସହାୟକ ଓ ନିର୍ଭରଶୀଳ ଶିଳ୍ପ ସଂସ୍ଥାରେ ଠିକା ଓ ଅସ୍ଥାୟୀ ଶ୍ରମ ବ୍ୟବସ୍ଥା ପ୍ରଚଳନକୁ ବିଧିସମ୍ମତ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଛି । ଏହି ଘୋଷଣାରୁ ସରକାର ମାଲିକମାନଙ୍କ ଦୀର୍ଘଦିନର ଦାବି ଗ୍ରହଣ କରିନେଇଥିବା ଜଣାଯାଏ । ଏହା ଫଳରେ ଉତ୍ପାଦନର ଅଳ୍ପ କେତେକ ମୌଳିକ କ୍ଷେତ୍ରରେ ସ୍ଥାୟୀ ଶ୍ରମିକ ରଖିବା ବ୍ୟବସ୍ଥା ପ୍ରଚଳନ କରାଯିବ' ।

ବିଜେପି ପରିଚାଳିତ ମେଣ୍ଟ ସରକାର ପକ୍ଷରୁ ଦ୍ୱିତୀୟ ପୀଢ଼ୀ ସଂସ୍କାର ନାଁରେ ପରିକଳ୍ପନା ପ୍ରକାଶ ପାଇଛି । ଶ୍ରମ ଆଇନ ସଂସ୍କାର ଏହି ପରିକଳ୍ପନାର ମୁଖ୍ୟ ବିଷୟ ଅଟେ । ଆର୍ଥିକ ଢାଞ୍ଚାରେ ସଂସ୍କାର ନୀତି ପ୍ରଚଳନ ହେବା ପରଠାରୁ ବିଶ୍ୱବ୍ୟାଙ୍କ- ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ବାରମ୍ବାର ଶ୍ରମ ଆଇନ ପରିବର୍ତ୍ତନ କ୍ଷେତ୍ରରେ ସରକାରୀ ବିଫଳତାକୁ ନାପସନ୍ଦ କରିଛି । ତେଣୁ ବାଜପେୟୀ ସରକାର ଦ୍ୱିତୀୟବାର ଆସନ କ୍ଷମତାକୁ ଫେରିବା ପରେ ଶ୍ରମ ଆଇନ ସଂଶୋଧନ ପ୍ରତି ଅଧିକ ଜୋର୍ ଦେଇଛି ।

ବିଶ୍ୱବ୍ୟାଙ୍କ-ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଇଙ୍ଗିତରେ ବିଶ୍ୱସାରା କେଉଁଠି ଉଦାରୀକରଣ-ଜଗତୀକରଣ-ଘରୋଇକରଣ ନିର୍ଦ୍ଦେଶ କାର୍ଯ୍ୟକାରୀ

ହେଉଛି, ସେଠାରେ ଶ୍ରମିକ ଶ୍ରେଣୀ ଜୀବନ ଜୀବିକା ଅଧିକାର ଉପରେ ନଗ୍ନ ଆକ୍ରମଣ ନଇଁ ଆସିଛି । ଆଜିର ଏହି ସାମ୍ରାଜ୍ୟବାଦୀ ଜଗତୀକରଣ ଯୁଗରେ ଆକ୍ରମଣର ମୂଳ କାରଣ ପୁଞ୍ଜିବାଦୀ ବ୍ୟବସ୍ଥାର ସଙ୍କଟ ମଧ୍ୟରେ ନିହିତ ରହିଛି । ବିଭିନ୍ନ ଦେଶର ପୁଞ୍ଜିବାଦୀ ଶାସକମାନେ ଫଣ୍ଡ-ବ୍ୟାଙ୍କ୍ ନିର୍ଦ୍ଦେଶମତେ ଶ୍ରମିକ ଶ୍ରେଣୀ ଉପରେ ନଗ୍ନ ଆକ୍ରମଣ ସଂଗଠିତ କରୁଛନ୍ତି । ମଜୁରି ସଂକୋଚନ, କ୍ଲୋଜାର୍, ତାଲାବନ୍ଦ, ଛଟେଇ, ଲେ ଅଫ୍, ବ୍ୟାପକ ଅସ୍ଥାୟୀ ତଥା ଠିକା ବ୍ୟବସ୍ଥା ପ୍ରଚଳନ, ଶ୍ରମ ବୋଝ ବୃଦ୍ଧି, ଘରୋଇକରଣ ଏବଂ ଶ୍ରମିକମାନଙ୍କ ସାଙ୍ଗଠନିକ ଅଧିକାର ଉପରେ ଆକ୍ରମଣ ଆଦି ପଦକ୍ଷେପମାନ ସରକାରୀ ସହାୟତାରେ ଅନୁସରଣ କରାଯାଉଛି ।

ଏଣୁ ଏହି ଆକ୍ରମଣକୁ ଟ୍ରେଡ୍ ୟୁନିୟନ୍ ଆନ୍ଦୋଳନ ମଥା ପାତି ଗ୍ରହଣ କରିପାରିବ ନାହିଁ । ଶ୍ରମିକ ଶ୍ରେଣୀ ନିଜର ଅଧିକାର ଓ ସୁବିଧା ସୁଯୋଗ ରକ୍ଷା କରିବା ପାଇଁ ଆନ୍ଦୋଳନର ପନ୍ଥା ଗ୍ରହଣ କରିବ । ଶାସକ ଶ୍ରେଣୀ ଶ୍ରମିକମାନଙ୍କୁ ନିରସ୍ତ୍ର କରିବା ପାଇଁ ଶ୍ରମ ଆଇନରେ ଥିବା ଯତ୍କିଞ୍ଚିତ୍ ସୁବିଧା ସୁଯୋଗ ପ୍ରତ୍ୟାହାର ପାଇଁ ଉଦ୍ୟର୍ତ୍ତ ହେବେ । ଜେଫରୀ ହ୍ୟାରୋଡ୍ ନାମକ ଜଣେ ଲେଖକ ''ଶ୍ରମିକ ଓ ତୃତୀୟ ବିଶ୍ୱ ଉପରେ ଋଣ ବୋଝ'' ଶୀର୍ଷକ ଏକ ପୁସ୍ତକରେ ଫଣ୍ଡ-ବ୍ୟାଙ୍କ୍ ନିର୍ଦ୍ଦେଶର ମତଲବ୍‌କୁ ବ୍ୟାଖ୍ୟା କରିଛନ୍ତି । ସେ କହିଛନ୍ତି, ''ଟ୍ରେଡ୍ ୟୁନିୟନ୍‌ମାନେ ହିଁ (ଫଣ୍ଡ-ବ୍ୟାଙ୍କ୍) ପ୍ରତିରୋଧର ମୁଖ୍ୟ ଶକ୍ତିଭାବେ ଚିହ୍ନଟ ହୋଇଛନ୍ତି । ଏଣୁ ଟ୍ରେଡ୍ ୟୁନିୟନ୍ ଓ ସଂଗଠକମାନଙ୍କ ଉପରେ ଦମନ ଅତ୍ୟାଚାର ପୂର୍ବର ସମସ୍ତ ରେକର୍ଡ୍‌କୁ ଟପି ଯାଇଛି ।''

## ଭାରତୀୟ ଶ୍ରମ ଆଇନ ସଂପର୍କରେ ବିଶ୍ୱବ୍ୟାଙ୍କ୍

ଭାରତରେ ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣ ନୀତି ୧୯୯୧ ବର୍ଷ ପରଠାରୁ ଲାଗୁ ହେବା ପରେ ସମସ୍ତ ବହୁଜାତୀୟ କମ୍ପାନୀ, ସେମାନଙ୍କ ଏଜେଣ୍ଟଓ ବିଶ୍ୱବ୍ୟାଙ୍କ୍ - ଆଇ.ଏମ୍.ଏଫ୍., ସରକାର ଉପରେ ଶ୍ରମ ଆଇନ ସଂଶୋଧନ ପାଇଁ ଚାପ ପକାଇ ଚାଲିଛନ୍ତି । ବିଶ୍ୱ ବ୍ୟାଙ୍କ୍ ଏହାର ବାର୍ଷିକ ରିପୋର୍ଟରେ କହିଛି ଯେ, କେବଳ ଭାରତବର୍ଷରେ ହିଁ ଟ୍ରେଡ୍ ୟୁନିୟନ୍‌ମାନେ ଜଗତୀକରଣ-ଘରୋଇକରଣ ସଂସ୍କାର ପ୍ରକ୍ରିୟାକୁ ଘୋର

ବିରୋଧ କରୁଛନ୍ତି । ବିଶ୍ୱବ୍ୟାଙ୍କ୍ ରିପୋର୍ଟଗୁଡ଼ିକରେ ଆମ ଦେଶର ଟ୍ରେଡ୍ ୟୁନିୟନ୍ ପ୍ରତି ଘୋର ବିଦ୍ୱେଷ ପ୍ରକାଶ ପାଇଛି । ଏକ ରିପୋର୍ଟରେ ବିଶ୍ୱବ୍ୟାଙ୍କ୍ ଭାରତୀୟ ଶିଳ୍ପପତି ରିଲାୟନ୍ସ ଇଣ୍ଡଷ୍ଟ୍ରିଜ୍‌ର ଚେୟାର୍‌ମ୍ୟାନ୍ ମୁକେଶ ଅମ୍ୱାନୀଙ୍କ ଉକ୍ତିକୁ ଉଦ୍ଧାର କରି କୁହାଯାଇଛି ଯେ, "ସବୁଠାରୁ ବଡ଼ ପ୍ରତିବନ୍ଧକ ଶ୍ରମ ଆଇନ ଆଡ଼େଇ ଦିଆଗଲେ ସେ ବୟନ ଶିଳ୍ପରେ ବିନିଯୋଗ କରିଥିବା ୦.୫ ବିଲିୟାନ୍ ଡଲାର୍ ପରିବର୍ତ୍ତେ ୫ ବିଲିୟାନ୍ ଡଲାର ବିନିଯୋଗ କରିପାରିବେ ।" ଏଣୁ ଆଜି ଶାସନ କ୍ଷମତାରେ ଥିବା ବି.ଜେ.ପି. ପରିଚାଳିତ ମେଣ୍ଟ ସରକାରଙ୍କ ଶ୍ରମ ଆଇନ ସଂସ୍କାର ପଛରେ କେଉଁମାନଙ୍କ ଉତ୍ସାହ ଉଦ୍ଦିପନା କାମ କରୁଛି, ଏହା ସ୍ପଷ୍ଟ ଅନୁମାନ କରିହେବ ।

## ଦ୍ୱିତୀୟ ଜାତୀୟ ଶ୍ରମ କମିଶନ

ଗତ ୧୯୯୯ ଜାନୁଆରୀ ୧୧ ତାରିଖ ଦିନ ବାଜପେୟୀ ସରକାରଙ୍କ ଶ୍ରମମନ୍ତ୍ରୀ ହଠାତ୍ ଦ୍ୱିତୀୟ ଶ୍ରମ କମିସନ ଗଠନ କରି ଘୋଷଣା କରିଥିଲେ । କମିସନ ଗଠନ ପୂର୍ବରୁ ସରକାର ସାଧାରଣ ସୌଜନ୍ୟତାକୁ ଲଂଘି ଟ୍ରେଡ ୟୁନିୟନମାନଙ୍କ ସହ ପରାମର୍ଶ କରିବା ଉଚିତ ମନେ କଲେ ନାହିଁ । ଆମ ଦେଶରେ ଏକ ସ୍ଥାୟୀ ଶ୍ରମ କମିଟି (SLC) ରହିଛି ପରମ୍ପରା କ୍ରମେ ସେଠାରେ ଏଥିନେଇ ଆଲୋଚନା ହେବା ଦରକାର । ସରକାରଙ୍କ ଘୋଷଣା ଏକ ତରଫା ଥିଲା ଏବଂ ୨ୟ ଶ୍ରମ କମିସନରେ ନିଷ୍ପତି ବିଷୟ ବସ୍ତୁ ମଧ ମନଇଚ୍ଛା ସ୍ଥିର କରିଦିଆଗଲା ।

ଏହି ଦ୍ୱିତୀୟ ଶ୍ରମ କମିସନରେ ଯେଉଁମାନଙ୍କୁ ରଖାଗଲା, ସେମାନେ ଅଧିକାଂଶତଃ ଏକଚାଟିଆ ପୁଂଜିପତି ଓ ବହୁ ଜାତୀୟ କଂପାନୀ ମାନଙ୍କର ଏଜେଣ୍ଟ ଅଟନ୍ତି । ଏପରି ଏକ କମିସନ ଶ୍ରମିକ ବିରୋଧି ନିଷ୍ପତି ନେବାପାଇଁ ହିଁ ଗଠନ କରାଯାଇଛି । ଏହି କମିଟି ଭୋକିଲା ଏକଚାଟିଆ ପୁଂଜିପତି ଓ ବହୁଜାତୀୟ କଂପାନୀମାନଙ୍କ ଅମାପ ଲାଭ ଠୁଳ ବାଟରେ ଅବାଧ ଶ୍ରମିକ ଶୋଷଣ ଚଳେଇବା ପାଇଁ ସୁବିଧା ସୁଯୋଗ ଜୁଟେଇବା ପାଇଁ ଉଦ୍ଦିଷ୍ଟ ଅଟେ । ବଜାର ଅର୍ଥନୀତି ନାଁରେ ଶ୍ରମିକ ଶୋଷଣକୁ ବିରାମହୀନ କ୍ଷିପ୍ର କରାଯିବ । କୌଣସି ଗଣତାନ୍ତ୍ରିକ ଟ୍ରେଡ ୟୁନିୟନ ଏହି ଦ୍ୱିତୀୟ ଜାତିୟ ଶ୍ରମ

କମିସନଠାରୁ ସୁଫଳ ଆଶା କରିବା ଉଚିତ ହେବ ନାହିଁ। ସି.ଆଇ.ଟି.ୟୁ., ଏ.ଆଇ.ଟି.ୟୁ.ସି., ଏଚ୍.ଏମ୍.ଏସ୍., ଆଇ.ଏସ୍.ଟି.ୟୁ.ସି. ପକ୍ଷରୁ ମିଳିତ ଭାବେ କେତେକ ଅବସରପ୍ରାପ୍ତ ସୁପ୍ରିମକୋର୍ଟ ବିଚାରପତିମାନଙ୍କ ନାମ କମିସନର ଚେୟାରମ୍ୟାନ୍ ପଦବୀ ପାଇଁ ସୁପାରିଶ କରାଯାଇଥିଲା। ଏହି ବିଚାରପତିମାନେ ଶ୍ରମିକମାନଙ୍କ ସଂପର୍କରେ ସହାନୁଭୂତିପୂର୍ଣ୍ଣ ଓ ବିବେକନୁମୋଦିତ ମତ ଦେଇପାରିଥାନ୍ତେ। କିନ୍ତୁ ସରକାର ଟ୍ରେଡ ୟୁନିୟନମାନଙ୍କ ମିଳିତ ଅନୁରୋଧ ପ୍ରତି କର୍ଣ୍ଣପାତ କଲେ ନାହିଁ। ଇତିମଧ୍ୟରେ ଆଇ.ଏନ.ଟି.ୟୁସି. ଓ ବି.ଏମ୍.ଏସ୍. ପ୍ରତିନିଧିମାନଙ୍କୁ କମିସନରେ ସାମିଲ କରାଯାଇଛି। ଏଚ୍.ଏମ୍.ଏସ୍. କମିସନ ବିବରଣୀରେ ଅଂଶ ଗ୍ରହଣ କରିବାପାଇଁ ନିଷ୍ପତି ଗ୍ରହଣ କରିଛି। କେବଳ ଏଚ୍.ଏମ୍.ଏସ୍.କୁ ବାଦ ଦେଇ ପ୍ରଚାର ଅଭିଯାନ କମିଟି ସହ ସାମିଲ ସମସ୍ତ ଟ୍ରେଡ ୟୁନିୟନ କମିସନର ଆଲୋଚନରେ ଅଂଶ ଗ୍ରହଣ କରିବେ ନାହିଁ ଘୋଷଣା କରିସାରିଛନ୍ତି।

## ଦ୍ୱିତୀୟ ଶ୍ରମ କମିସନର ବିଚାର୍ଯ୍ୟ ବିଷୟ

ଗତ ୧୯୯୯ ଅକ୍ଟୋବର ୧୫ ତାରିଖ ଦିନ ଭାରତ ସରକାର ଦ୍ୱିତୀୟ ଶ୍ରମ କମିସନର ଶ୍ରମ ବିଚାର୍ଯ୍ୟ ବିଷୟ ଗୁଡ଼ିକୁ ବିଜ୍ଞପ୍ତି ଆକାରରେ ପ୍ରକାଶ କରିଥିଲେ। ବାଜପେୟୀ ସରକାର ଶପଥ ଗ୍ରହଣ ର ଦ୍ୱିତୀୟ ଦିନ ହିଁ ଏହି ବିଜ୍ଞପ୍ତି ପ୍ରକାଶିତ ହୋଇଥିଲା। ବିଚାର୍ଯ୍ୟ ବିଷୟ ଗୁଡ଼ିକ ନିମ୍ନ ପ୍ରକାର ଅଟେ। (କ) ସଂଗଠିତ ଶିଳ୍ପ କ୍ଷେତ୍ରରେ ପ୍ରଜୁଜ୍ୟ ଶ୍ରମ ଆଇନ ଗୁଡ଼ିକୁ ଯୁକ୍ତି ସଂଗତ ତଥା ସୁବ୍ୟବସ୍ଥାକରଣ କରିବା; (ଖ) ଅସଂଗଠିତ କ୍ଷେତ୍ରରେ ଶ୍ରମିକକୁ ସର୍ବନିମ୍ନ ସୁରକ୍ଷା ପ୍ରଦାନ ପାଇଁ ଏକ ବ୍ୟାପକ ଭିତ୍ତିକ ଆଇନ ପ୍ରଣୟନ ପାଇଁ ସୁପାରିଶ କରିବା।

ଧାର୍ଯ୍ୟ ବିଷୟ ଗୁଡ଼ିକର ଆଲୋଚନା ଓ ସୁପାରିଶ ମଧ୍ୟ କେତେକ ନିର୍ଦ୍ଦେଶକୁ ମାନି କାମ କରିବ। କମିସନକୁ କେବଳ ସେହି ଧାର୍ଯ୍ୟ ନିର୍ଦ୍ଦେଶାବଳୀ ଭିତ୍ତିରେ ସୁପାରିଶ କରିବା ପାଇଁ କହିବା ବାସ୍ତବରେ ସରକାରଙ୍କ କୁମତଲବ୍‌କୁ ପ୍ରଥମରୁ ହିଁ ସ୍ପଷ୍ଟ କରିଦେଇଥିଲା। କମିସନ ପ୍ରତି ନିର୍ଦ୍ଦେଶ ହେଉଛି, ଏହା ଆର୍ଥିକ ବାତାବରଣ, ଦୃଢ଼ ଯାନ୍ତିକ କୌଶଳର

ବିକାଶ, ଶିଳ୍ପ କ୍ଷେତ୍ରରେ ଉପସ୍ଥିତ ଅବସ୍ଥା ଓ ସମୟ, ବାଣିଜ୍ୟ ଓ ସେବା, ଅର୍ଥନୀତି ଗତ ଜାଗତିକରଣ, ବାଣିଜ୍ୟ ଓ ଶିଳ୍ପରେ ଉଦାରିକରଣ, ଆର୍ନ୍ତଜାତିକ ପ୍ରତିଯୋଗିତା, ଏବଂ ଭବିଷ୍ୟତର ଶ୍ରମ ବଜାରର ଆବଶ୍ୟକତାକୁ ଆଖି ଆଗରେ ରଖି ଆଇନଗତ ସଂଶୋଧନ, ସର୍ବନିମ୍ନ ଶ୍ରମିକ ସୁରକ୍ଷା ଓ କଲ୍ୟାଣ ବ୍ୟବସ୍ଥା; ଏବଂ ସେଥିପାଇଁ ସର୍ବନିମ୍ନ ପ୍ରଶାସନିକ ବ୍ୟବସ୍ଥା ଏବେ ଓ ଆଗକୁ କାରିଗରୀ କୌଶଳ ବିକାଶକୁ ଲକ୍ଷ୍ୟ ରଖି ଶ୍ରମ ବଜାର ସୃଷ୍ଟି ପଂନ୍ଥା ଏବଂ ମଜୁରୀକୁ ଉତ୍ପାଦନ ସହ ସଂଯୋଜିତ କରିବା ଆଦି ଗାଇଡ ଲାଇନ ଭିତ୍ତିରେ ହିଁ ସୁପାରିଶ ହେବ । ଏହା ବ୍ୟତୀତ ୧୯୯୮ ମଇ ମାସର ଶିଳ୍ପ ପ୍ରଶାସନ ଆଇନ ସଂଶୋଧନ ନେଇ ସରକାରୀ କମିଟିର ସୁପାରିଶକୁ ମଧ୍ୟ ଦ୍ୱିତୀୟ ଶ୍ରମ କମିସନ ବିଚାର ପାଇଁ ରଖା ଯାଇଛି ।

ମାଲିକମାନଙ୍କ ଶ୍ରମିକ ବିରୋଧୀ ମତଭେଦକୁ ଆଇନ ସମ୍ମତ କରିବା ହିଁ କମିସନକୁ ପ୍ରଦତ୍ତ ନିର୍ଦ୍ଦେଶାବଳୀ ଗୁଡ଼ିକର ଲକ୍ଷ ଅଟେ । ମାଲିକଶ୍ରେଣୀ ଶ୍ରମ ସଂପର୍କୀୟ ସମସ୍ତ ବିଷୟ ଉପରେ ଅବାଧ କ୍ଷମତା ହାସଲ କରିବାକୁ ଚାହୁଁଛି । ଏପରି ହୋଇ ପାରିଲେ ସେମାନେ ଶ୍ରମ ଆଇନକୁ ଜଂଗଲ ଆଇନରେ ପରିଣତ କରି ପାରିବେ । ସରକାର ଶ୍ରମ ସଂପର୍କ କ୍ଷେତ୍ରରେ ଆଇନ ସମ୍ମତ ଅଧିକାର ପୋଷଣ କରୁ, ଏହା ସେମାନେ ଚାହାନ୍ତି ନାହିଁ । ସେମାନେ ଟ୍ରେଡ ୟୁନିୟନ ଅଧିକାର ସମୂଳେ ଉଚ୍ଛେଦ ଚାହିଁଛନ୍ତି । ସରକାରଙ୍କ ଶ୍ରମ ଆଇନ ସଂସ୍କାର ପଛରେ ମଧ୍ୟ ସମାନ ମତଭେଦ ରହିଛି । ଶ୍ରମିକ ସଂଗଠନ ମାନଙ୍କର ବହୁ ଜଟିଳ ସଂଗ୍ରାମ ଫଳରେ ଯେଉଁ ଅଧିକାର ସୁଯୋଗ ହାସଲ ହୋଇଛି ଏହାର ମୂଳତଃପାଟନ ପାଇଁ ଷଡ଼ଯନ୍ତ୍ର ଆରମ୍ଭ ହୋଇଛି ।

ଏହି ଜାତୀୟ ଶ୍ରମ କମିସନକୁ ମଇ ୧୯୯୯ ଶିଳ୍ପ ପ୍ରଶାସନ ଆଇନ ସଂଶୋଧନ କମିଟିର ସୁପାରିଶ ଦ୍ୱାରା ପରିଚାଳିତ ହେବାକୁ କୁହାଯାଇଛି । କିନ୍ତୁ ଏହି କମିଟିର ସୁପାରିଶ ଗୁଡ଼ିକ କଣ ଏବଂ ସେ କମିଟିରେ କେଉଁମାନେ ଥିଲେ ?

ବାଜପେୟୀ ତାଙ୍କର ପୂର୍ବ ପ୍ରଧାନମନ୍ତ୍ରୀତ୍ୱ କାଳରେ ଏକ ଶ୍ରମ ସଂପର୍କୀୟ କାର୍ଯ୍ୟ ନିର୍ବାହୀ କମିଟି ଗଠନ କରିଥିଲେ । ଏହି କମିଟିରେ କେ.ଏମ୍.ବିରଲା, ନୁସଲୀ ୱାଡ଼ିୟା, ପି.କେ. ମିତଲ, ରତନ ଟାଟା

ନେତୃତ୍ୱରେ ବହୁ ଘରୋଇ ଶିଳ୍ପପତିମାନଙ୍କୁ ଅବସ୍ଥାପିତ କରାଯାଇଥିଲା । ଏହି କମିଟିରେ ଜଣେ ହେଲେ କେହି ଟ୍ରେଡ ୟୁନିୟନ ପ୍ରତିନିଧି ନଥିଲେ । ଉକ୍ତ କମିଟିର ମୂଖ୍ୟ ସୁପାରିଶ ଗୁଡ଼ିକ ନିମ୍ନ ପ୍ରକାର ଅଟେ ।

(୧) ଶିଳ୍ପ ବିବାଦ ଆଇନ, ୧୯୪୭ କୁ ଏପରି ପରିବର୍ତ୍ତନ କରାଯାଉ, ଯେପରି ବଳକା ଶ୍ରମ ଶକ୍ତିକୁ ବାଦ ଦେଇ ହେବ, ଏବଂ ଶ୍ରମିକ ଆନ୍ଦୋଳନ, ଅଶାନ୍ତିବିନା ବ୍ୟବସାୟ ଚ଼ଳେଇବା ହେବ । ଶିଳ୍ପ ବନ୍ଦ ଆଇନଗତ କଟକଣା ଯୋଗୁ ସମ୍ଭବପର ହେଉନାହିଁ । ଏପରିକି ୧୦୦ରୁ ଉର୍ଦ୍ଧ୍ୱ ଶ୍ରମିକ ଥିଲେ ମଧ୍ୟ କରାଯାଇପାରୁ ନାହିଁ । ଏହି ପ୍ରତିବଂଧକ ଦୂର ହେଉ ।

(୨) ଶ୍ରମ ସମୟ ନିର୍ଘଣ୍ଟ ଓ ବିଶ୍ରାମ ସମୟ ଦୋକାନ ବଜାର ଓ ବ୍ୟବସାୟ ପ୍ରତିଷ୍ଠାନ କ୍ଷେତ୍ରରେ ବଜାର ଓ ବ୍ୟବସାୟ ପ୍ରତିଷ୍ଠାନ କ୍ଷେତ୍ରରେ ପ୍ରତ୍ୟାହୃତ ହେଉ । କାମ ବିଶ୍ରାମର ସମୟ ସୀମା ଏହି କ୍ଷେତ୍ରରେ କୋହଳ ହେଉ ।

(୩) ଅଧିକ କାମ ପାଇଁ ଦୋହରା ମଜୁରୀ ଅର୍ଥାତ ଓଭର ଟାଇମ ଦରମା ପ୍ରଥା ବାତିଲ ହେଉ । ବାର୍ଷିକ ଛୁଟି (EL) ଓ ବେମାର ଛୁଟି (sick leave) ଆଜି ସବେତନ ଛୁଟି ଅତିଶୟ ଅଯୁକ୍ତିକର ଏବଂ ପ୍ରତିଯୋଗିତା ମୂଳକ ବଜାର କ୍ଷେତ୍ରରେ ପ୍ରତିବଂଧକ ସୃଷ୍ଟି କରୁଛି । ଏଣୁ ଏହା ବାତିଲ ହେଉ ।

(୪) ମଜୁରୀ ପ୍ରଦାନ ଆଇନ, ଇ.ଏସ୍.ଆଇ. ଆକ୍ଟ, ଇ.ପି.ଏଫ୍. ଆକ୍ଟ କ୍ଷେତ୍ରରେ ବ୍ୟାପକ ପରିବର୍ତ୍ତନ କରାଯାଉ ।

(୫) ଶ୍ରମଆଇନ ତଦାରଖ ବ୍ୟବସ୍ଥା ସମୂଳେ ଉଚ୍ଛେଦ କରାଯାଉ ।

ପୁନଶ୍ଚ ବାଜପେୟୀ ସରକାରଙ୍କ ଶ୍ରମନୀତି ସଂପର୍କୀୟ ମନୋଭାବ ନବମ ଯୋଜନା ଚ଼ିଠା ଦଲିଲରେ ବ୍ୟାଖ୍ୟା କରାଯାଇଛି । ସେଠାରେ ଶ୍ରମ ଆକ୍ଟ ସଂସ୍କାର ସପକ୍ଷରେ ଏହାକୁ ଅଧିକ ଯୁକ୍ତି ସଂଗତ, ସରଳ ଏବଂ ସାମାଜିକ, ଆର୍ଥିକ ପରିସ୍ଥିତି ଭିତ୍ତିରେ ସମୟପୋଯୋଗୀ କରିବା ପାଇଁ ଜୋର ଦିଆଯାଇଛି ।

ଯୋଜନା କମିଶନ ମୋଣ୍ଟେକ ସିଂ ଆଲୁବେଲିୟାଙ୍କ ଅଧ୍ୟକ୍ଷତାରେ ଏକ କାର୍ଯ୍ୟନିର୍ବାହୀ ଦଳ ରୋଜଗାର ବିଷୟ ଉପରେ ନିଯୁକ୍ତ କରିଥିଲା । ଶ୍ରୀ ଆଲୁବେଲିଆ ଯୋଜନା କମିସନର ଅନ୍ୟତମ ସଭ୍ୟ ଓ ୧୯୯୧ରେ ନୂଆ ଆର୍ଥିକ ନୀତି ଗୃହିତ ହେଲାବେଳେ ବିତ୍ତ ସଚିବ ଥିଲେ । ଏହି ବ୍ୟକ୍ତି ଜଣକ ମାଲିକମାନଙ୍କ ସପକ୍ଷରେ ଯୁକ୍ତି ବାଢ଼ିଲାବେଳେ ସକଳ ସୀମା ସରହଦ ଟପି ଯିବାରେ ପାରଗଂମ ଲୋକ । ସେ କହିଲେ, 'ଶ୍ରମ ସଂପର୍କ କ୍ଷେତ୍ରରେ ବହୁ ଅନିୟମିତା ରହିଛି ଯାହା ଅବିଳମ୍ବେ ଦୂର ହେବା ଦରକାର । ଶ୍ରମ ଆଇନ ଗୁଡ଼ିକ ଅତି କଠୋର, ଅଧିକ ରୋଜଗାର ସୃଷ୍ଟି କ୍ଷେତ୍ରରେ ପ୍ରତିବଂଧକ ପାଲଟିଛି' । ଯୋଜନା ଚିଠାରେ ବି.ଜେ.ପି. ପରିଚାଳିତ ମେଣ୍ଟ ସରକାର ତାଙ୍କ ଶ୍ରମିକ ବିରୋଧୀ ଲକ୍ଷ୍ୟକୁ ସ୍ୱଷ୍ଟଭାବେ ବ୍ୟାଖ୍ୟା କରିଛନ୍ତି । କାର୍ଯ୍ୟ ନିର୍ବାହୀ ଦଳ ମଧ ଲକ୍ଷ ମୁତାବକ ନିର୍ଦ୍ଦିଷ୍ଟ ସୁପାରିଶ କରିଛି; (୧) ଅଖୋଜ ଶ୍ରମ ଆଇନ ଗୁଡ଼ିକ ଚିହ୍ନଟ କରିବା ଓ ବାଦ ଦେବା; (୨) ପରିବର୍ତ୍ତନ ଦରକାର କରୁଥିବା ଶ୍ରମ ଆଇନକୁ ସଂଶୋଧନ କରିବା; (୩) ସମସ୍ତ ରୁଲ, ରେଗୁଲେସନ୍, ଅର୍ଡର ଓ ବିଜ୍ଞପ୍ତି ଗୁଡ଼ିକୁ ସଂଶୋଧନ କରିବା । କାର୍ଯ୍ୟ ନିର୍ବାହୀ କମିଟିର ସୁପାରିଶ ଭିତ୍ତିରେ ଦ୍ୱିତୀୟ ଶ୍ରମ କମିସନ କାମ କରିବ; ଏଣୁ ଆମ ଦେଶର ଟ୍ରେଡ ୟୁନିୟନ ଆନ୍ଦୋଳନ କମିସନ କଣ ନିଷ୍ପତି ଗ୍ରହଣ କରିବ, ଏହା ଏବେଠାରୁ ହୃଦୟଙ୍ଗମ କରିବା ଦରକାର ।

ଶ୍ରମ୍ ଆଇନ୍‌ର କେତେକ ନିର୍ଦ୍ଦିଷ୍ଟ ଧାରା ଉପଧାରା ଗୁଡ଼ିକ ଆକ୍ରମଣର ଶରବ୍ୟ ହେବାକୁ ଯାଉଛନ୍ତି । ଟ୍ରେଡ୍‌ୟୁନିୟନ ଗଠନ, ନିଯୁକ୍ତି ନିରାପତ୍ତା, ସ୍ଥାୟୀ ନିଯୁକ୍ତି ଏବଂ ସର୍ବୋପରି ଧର୍ମଘଟରେ ଅଧିକାର ଆଜି ଏବେ ଅନାବଶ୍ୟକ ମନେ କରାଯାଉଛି । ଶିଳ୍ପ ବିବାଦ ଆଇନର ୨୫ (ଓ) ଧାରା ଉଠିଯାଇ ଛଟେଇ କିପରି ଅବାଧ ହେବ ଏବଂ ବିବାଦ ଫଇସଲ ମେସିନାରୀ ଯାହା ଆରମ୍ଭରୁ ହିଁ ଅକ୍ରମଣ୍ୟ ଏହାର ସମୂଳେ ଉଚ୍ଛେଦ ପାଇଁ ଶ୍ରମ ମନ୍ତ୍ରଣାଳୟ ଓ ମାଲିକ ମାନଙ୍କ ଲବି କାମ କରିଚାଲିଛି । ଧର୍ମଘଟ ଅଧିକାର ମଧ ଯାହା ପ୍ରଥମରୁ ବହୁ ବାଧାପ୍ରତିବଂଧକ ଏବଂ ଔପଚାରିକତା ଭିତରେ ତିଷ୍ଠି ରହିଛି, ସେମାନେ ଏହାକୁ ସଂପୂର୍ଣ୍ଣ ଉଚ୍ଛେଦ କରିବାକୁ ବସିଛନ୍ତି ।

ଏତଦ୍ ବ୍ୟତୀତ ମାଲିକ ମାନଙ୍କ ସଂଗଠନ କନେଫେଡେରେସନ୍ ଇଣ୍ଡିୟନ ଇଣ୍ଡଷ୍ଟ୍ରିଜ୍ ଓ 'ଆସୋଚେମ୍' ପକ୍ଷରୁ ସମଗ୍ର ସେବା ସଂସ୍ଥାକୁ ଶିଳ୍ପ ବିବାଦ ଆଇନ ପରିସର ବାହାରକୁ ନେଇ ଯିବାକୁ ଦାବି କରିଛି । ସରକାରୀ କର୍ମଚାରୀ, ବ୍ୟାଙ୍କ, ଜଳ ଓ ବିଜୁଳୀ ଯୋଗାଣ, ପରିବହନ ସମେତ ବହୁ ଅନ୍ୟାନ୍ୟ ସଂସ୍ଥା ଗୁଡ଼ିକୁ ସେମାନେ ଶିଳ୍ପ ଓ ଶିଳ୍ପ ବିବାଦ ପରିସର ବାହାରେ ରଖିବାକୁ ଦାବି କରିଛନ୍ତି, ଏପରିକି ଯେ କୌଣସି ଶିଳ୍ପର ଗୁରୁତ୍ୱପୂର୍ଣ୍ଣ ଉତ୍ପାଦନ ବିଭାଗ ଗୁଡ଼ିକୁ ମଧ ସେମାନେ ଶିଳ୍ପ ପରିଭାଷାରୁ ବାହାରେ ରଖିବାକୁ ପ୍ରସ୍ତାବ ଦେଇଛନ୍ତି । ସେ କ୍ଷେତ୍ରରେ ନିଯୁକ୍ତ ଶ୍ରମିକ ମଧ ଶ୍ରମିକ ପଦବାଚ୍ୟ ହେବେ ନାହିଁ ।

## ଶ୍ରମିକ ଶ୍ରେଣୀ ବିରୁଦ୍ଧରେ ଗଭୀର ଷଡ଼ଯନ୍ତ୍ର

ପୁଞ୍ଜିପତି ଗୋଷ୍ଠୀମାନଙ୍କ ଭୟଙ୍କର ଶ୍ରମିକ ବିରୋଧି ମତଲବ୍‌କୁ ବି.ଜେ.ପି. ପରିଚାଳିତ ମେଣ୍ଟ ସରକାରର ଖୋଲା ସମର୍ଥନ ଫଳରେ ଆଜି ଟ୍ରେଡ ୟୁନିୟନ ଆନ୍ଦୋଳନ ପ୍ରତି ଘୋର ବିପଦ ନଇଁ ଆସିଛି । ଶ୍ରମ ଆଇନ ସଂଶୋଧନ ଓ ସୁଲଭ ଶ୍ରମ ବଜାର ପାଇଁ ଶାସକମାନେ ଶ୍ରମିକ ଶ୍ରେଣୀ ଆନ୍ଦୋଳନ ବିରୁଦ୍ଧରେ ଚରମ ଆଘାତ ହାଣିବା ପାଇଁ ଉଦ୍ୟତ ହୋଇଛନ୍ତି ।

ପାର୍ଲିଆମେଣ୍ଟରେ ଟ୍ରେଡ ୟୁନିୟନ ଆଇନ ସଂଶୋଧନ ବିଲ ଆଗତ ହୋଇ ସାରିଛି । ଏହା ଟ୍ରେଡ ୟୁନିୟନ ରେଜିଷ୍ଟ୍ରେସନ ଓ କର୍ମକର୍ତ୍ତା ନିର୍ବାଚନ କ୍ଷେତ୍ରରେ ବିଭିନ୍ନ କଟକଣା ବ୍ୟବସ୍ଥା ଆଣିଛି । ଶ୍ରମିକ ପରିଭାଷାକୁ ମଧ ସଂଶୋଧନ ପାଇଁ ଚେଷ୍ଟା ଚାଲିଛି । ମାସିକ ୧୦ ହଜାର ଟଙ୍କାରୁ ଅଧିକ ଦରମା ପାଉଥିବା ଶ୍ରମିକକୁ ଶ୍ରମିକ ପରିଭାଷାରୁ ଅଲଗା କରାଯିବ । ଠିକ ଶ୍ରମ (ନିୟନ୍ତ୍ରଣ ଓ ଉଚ୍ଛେଦ) ଆଇନ କଳ ମଧ ପରିବର୍ତ୍ତନ କରାଯିବ । ଶିଳ୍ପସଂସ୍ଥାରେ ଶତକଡ଼ା ୧୦% କିମ୍ବା ୧୦୦ ଶ୍ରମିକଙ୍କ ଆବେଦନ ସହ ଦରଖାସ୍ତ କରିବା ଆଇନ ଆସିଲେ ଟ୍ରେଡ୍ ୟୁନିୟନ୍ ରେଜିଷ୍ଟ୍ରେସନ୍ କେତେକ କ୍ଷେତ୍ରରେ ଅସମ୍ଭବ ଓ ଅନେକ କ୍ଷେତ୍ରରେ ଦୁସାଧ ହୋଇପଡ଼ିବ । ଘରୋଇ ମାଲିକନା କ୍ଷେତ୍ରରେ ସାଧାରଣତଃ ୟୁନିୟନ ଗଠନ କଥା ଆସିଲେ, ଶ୍ରମିକମାନେ ଭୟଭୀତ

ହୋଇଥାନ୍ତି । କାରଣ ଯିଏ ଆଗକୁ ଯିବ, ମ୍ୟାନେଜମେଣ୍ଟ ବିଭିନ୍ନ ଆଳରେ ଦଣ୍ଡବିଧାନ କରିବେ । ବର୍ତ୍ତମାନ ୭ ଜଣ ଆବେଦକ ଯୋଗାଡ଼ କରିବା ହୁଏତ ୟୁନିୟନ୍‌ଟିଏ ଗଠନ ପାଇଁ ସହାୟକ ହେଉଛି, କିନ୍ତୁ ୧୦% ବା ୧୦୦ ଜଣ ଆବେଦକ ଯୋଗାଡ଼ କରିବା ଅସମ୍ଭବରେ ପରିଣତ ହେବ । କେବଳ ନୂଆ ୟୁନିୟନ ଗଠନ କ୍ଷେତ୍ରରେ ପ୍ରତିବଂଧକ କାହିଁକି, ଆସନ୍ନ ସଂଶୋଧନରେ ପୁରୁଣା ୟୁନିୟନ ମଧ୍ୟ ରେଜିଷ୍ଟ୍ରାରଙ୍କ ମନମାଫିକ୍ ନହେଲେ ଅର୍ଥାତ ରେଜିଷ୍ଟ୍ରାର ୟୁନିୟନ ସଭ୍ୟ ସଂଖ୍ୟା ହ୍ରାସ ପାଇଥିବା ଅନୁଭବ କଲେ, ରେଜିଷ୍ଟ୍ରେସନ କାଟି ଦେଇପାରିବେ । ତେଣୁ ନୂଆ ୟୁନିୟନ ଗଠନକୁ କାଠିକର ପାଠ କରିଦେବା ଓ ପୁରୁଣା ୟୁନିୟନର ରେଜିଷ୍ଟ୍ରେସନ କାଟି ଦେବା ହେଉଛି ଆଗତ ସଂଶୋଧନର ମୂଳ ମତଲବ ଅଟେ । ସଂଗଠିତ କ୍ଷେତ୍ରରେ ଥିବା ଶ୍ରମିକଙ୍କୁ ଟ୍ରେଡ ୟୁନିୟନ ପରିସର ବାହାରକୁ ନେବା ପାଇଁ ଶ୍ରମିକର ପରିଭାଷା ପରିବର୍ତ୍ତନ କରାଯାଉଛି । ଠିକା ଶ୍ରମ ଆଇନରେ ସ୍ଥାୟୀ କାମରେ ଠିକା ଶ୍ରମିକ ନିଯୁକ୍ତି ନେଇଥିବା ବାଧା ନିଷେଧକୁ ଉଠାଇ ଦିଆଯାଉଛି । ସର୍ବତ୍ର ଠିକା ଓ ଅସ୍ଥାୟୀ ଶ୍ରମିକ ନିୟୋଜନ ବ୍ୟବସ୍ଥା ପ୍ରଚଳନ ହେବ; 'କୋର ଓ ପେରିଫେରୀ' ଭାବେ ଉତ୍ପାଦନ କ୍ଷେତ୍ରକୁ ବାଣ୍ଟି, ବ୍ୟାପକ ଇଲାକା ରେ ଠିକା ଶ୍ରମ ବ୍ୟବସ୍ଥା ପ୍ରଚଳନ ପାଇଁ ଆଇନର ସଂଶୋଧନ ହେବ ।

ଏତଦ୍‌ବ୍ୟତୀତ, କଂଚାମାଲ ପ୍ରୋସେସିଂ, ସମସ୍ତ ପ୍ରକାର ରକ୍ଷଣାବେକ୍ଷଣ-ମରାମତି କାମ, ସେବାସଂସ୍ଥା ଗୁଡ଼ିକର ଶ୍ରମିକମାନେ ମଧ୍ୟ ଅସ୍ଥାୟୀ ତଥା ଠିକା ଶ୍ରମିକ ପାଲଟିବେ । ଏହି ସବୁ କ୍ଷେତ୍ରରେ ସମୁଦାୟ ଉତ୍ପାଦନ ପ୍ରକ୍ରିୟାର ୮୦ ଭାଗ ଶ୍ରମିକ କାମ କରନ୍ତି, ସେମାନେ ଠିକା ଶ୍ରମିକ ଭାବେ ସକଳ ପ୍ରକାର ସ୍ଥାୟୀ ସୁବିଧା ସୁଯୋଗରୁ ବଂଚିତ ହେବେ । ମାଲିକମାନଙ୍କ ଚକ୍ରାନ୍ତ କ୍ରମେ ଏକ ବ୍ୟାପକ କ୍ଷେତ୍ରରେ ସ୍ଥାୟୀ ଧରଣର ନିୟମିତ କାମକୁ ଠିକା ପ୍ରଥାରେ ଅନ୍ତର୍ଭୁକ୍ତ କରାଯିବ । ଅତିତରେ ହାଇକୋର୍ଟ ଓ ସୁପ୍ରିମକୋର୍ଟ ସ୍ଥାୟୀ ଧରଣର କାମ ସଂପର୍କରେ ଦେଇଥିବା ରାୟ ଗୁଡ଼ିକ ଅକାମୀ ହେବ । ଏହି ବ୍ୟବସ୍ଥା ପ୍ରଣୟନ ପଛରେ ସରକାରଙ୍କ ମତଲବ ମଧ୍ୟ ସୁଦୂର ପ୍ରସାରୀ ଅଟେ । ଅସ୍ଥାୟୀ ତଥା ଠିକା ଶ୍ରମିକମାନେ ସ୍ୱଭାବତଃ ଟ୍ରେଡ ୟୁନିୟନ ଆନ୍ଦୋଳନ ପ୍ରତି ବିମୁଖ ଅଟନ୍ତି । ନିଯୁକ୍ତି ସୁରକ୍ଷିତ ନଥିବା ଯୋଗୁଁ

ଟ୍ରେଡ ୟୁନିୟନରେ ଯୋଗ ଦିଅନ୍ତି ନାହିଁ । ମାଲିକମାନଙ୍କ ଦଣ୍ଡ ବିଧାନ ଭୟ ସେମାନଙ୍କୁ ସଦାବେଳେ ଅସଂଗଠିତ କରି ରଖିଥାଏ । ଅତଏବ ଅସ୍ଥାୟୀ ତଥା ଠିକା ବ୍ୟବସ୍ଥା ପ୍ରଚଳନ ପୂର୍ବକ ସରକାର ଶ୍ରମିକମାନଙ୍କର ଏକ ବଡ଼ ଅଂଶକୁ ଟ୍ରେଡ ୟୁନିୟନ ପରିସର ବହାରକୁ ଟାଣି ନେବା ପାଇଁ ଚେଷ୍ଟା କରୁଛନ୍ତି ।

ଅସଂଗଠିତ ଶ୍ରମିକମାନଙ୍କ ପାଇଁ ସରକାରଙ୍କ କୁମ୍ଭୀର କାନ୍ଦଣା ପ୍ରତାରଣାପୂର୍ଣ୍ଣ ଅଟେ । ସରକାର, ମାଲିକମାନଙ୍କ ସଂଗଠନ, ଏବଂ ସାମ୍ବାଦିକମାନେ ଅସଂଗଠିତ ଶ୍ରମିକମାନଙ୍କ ପାଇଁ ଅହରହ ଅଶ୍ରୁ ବିସର୍ଜନ କରୁଥିବା ଦେଖାଯାଇଥାନ୍ତି । କିନ୍ତୁ ଶ୍ରମିକଶ୍ରେଣୀ ଓ ତାର ଟ୍ରେଡ ୟୁନିୟନ ଆନ୍ଦୋଳନ ସେମାନଙ୍କୁ ଅଶ୍ରୁମୋଚନର ଅସଲ ଚେହେରାକୁ ଚିହ୍ନି ରଖିବା ଦରକାର । ସଦା ସର୍ବଦା ସେମାନେ ଅସଂଗଠିତ ଓ ସଂଗଠିତ ଶ୍ରମିକମାନଙ୍କ ମଧ୍ୟରେ ବିଭେଦ ପ୍ରାଚୀର ସୃଷ୍ଟି କରିଥାନ୍ତି । ଅସଂଗଠିତ କ୍ଷେତ୍ରରେ କର୍ମରତ ବିଶାଳ ଶ୍ରମଜୀବୀ ମଣିଷ ପାଖରେ ଆଇନର ସାହା ଭରସା ନାହିଁ । ଅଧିକାଂଶ ଶ୍ରମ ଆଇନ ସେମାନଙ୍କ କ୍ଷେତ୍ରରେ ଲାଗୁହୁଏ ନାହିଁ । ନିଯୁକ୍ତି ସର୍ତ୍ତାବଳୀ ଅସଂଗଠିତ ଶ୍ରମିକ କ୍ଷେତ୍ରରେ ଅତ୍ୟନ୍ତ କ୍ଷୀଣ ଏବଂ ନାହିଁ କହିଲେ ଚଳିବ । ସେମାନେ ମାଲିକର ମର୍ଜି ଉପରେ ଜୀବନ ଧାରଣ କରନ୍ତି । ଦୈନ୍ୟ ଦାରିଦ୍ର୍ୟର ଚୀର ସହଚର ହେଇଛନ୍ତି ଅସଂଗଠିତ ଶ୍ରମିକ । ବାଜପେୟୀ ସରକାର ସେମାନଙ୍କୁ ଦୁର୍ଦ୍ଦଶା ମୁକ୍ତ କରିବାକୁ ଇଚ୍ଛୁକ ନୁହେଁ । ସେମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ଆଇନ ପ୍ରଣୟନ ଇଚ୍ଛା କରେନାହିଁ । ସରକାର ଚାହୁଁଛନ୍ତି, ସଂଗଠିତ କ୍ଷେତ୍ରରେ ଥିବା ଶ୍ରମିକମାନେ ମଧ୍ୟ ଅସଂଗଠିତ ପ୍ରର୍ଯ୍ୟାୟକୁ ଚାଲିଯାନ୍ତୁ । ଟ୍ରେଡ ୟୁନିୟନ ଆନ୍ଦୋଳନ କେତେକ ସଂଗଠିତ ଶ୍ରମିକମାନଙ୍କ ଆନ୍ଦୋଳନର ପ୍ରତିନିଧିତ୍ୱ କରୁଥିବା ଅଭିଯୋଗ ବାଢ଼ି, ସରକାର ମାଲିକ ପକ୍ଷ ଓ ସେମାନଙ୍କ ଏଜେଣ୍ଟମାନେ ବାରମ୍ବାର ଟ୍ରେଡ ୟୁନିୟନ ଆନ୍ଦୋଳନକୁ ବଦନାମ କରିବା ପାଇଁ ଚେଷ୍ଟା କରିଛନ୍ତି । କିନ୍ତୁ ସେମାନଙ୍କ କପଟ ଆଚରଣ ମାତ୍ରେ ଗୋଟିଏ ଉଦାହରଣରୁ ସ୍ପଷ୍ଟ ହୁଏ- ଯେତେବେଳେ ଟ୍ରେଡ ୟୁନିୟନ ଆନ୍ଦୋଳନ କୃଷି ଶ୍ରମିକ ମାନଙ୍କ ପାଇଁ ବ୍ୟାପକ ଆଇନ ପ୍ରଣୟନ ଦାବି କରୁଛି ଏହା ସରକାର ଗ୍ରହଣ କରୁନାହିଁ କାହିଁକି ? ସରକାର- ଶ୍ରମିକମାନଙ୍କ ମଧ୍ୟରେ ଶତକଡ଼ା ୯୧ ଭାଗ ଶ୍ରମିକମାନଙ୍କୁ ଅସଂଗଠିତ ଶ୍ରମିକମାନେ ଚିହ୍ନଟ କରୁଛନ୍ତି । ସରକାର ସେମାନଙ୍କ

ଦୁର୍ଦ୍ଦଶାରେ ଆଶୁ ବିସର୍ଜନ କରୁଛି । କିନ୍ତୁ ଏହି ୯୧ ଭାଗ ଶ୍ରମିକମାନଙ୍କ ମଧ୍ୟରେ ସର୍ବାଧିକ ଗରିଷ୍ଠ ଅଂଶ ହେଉଛି କୃଷି ଶ୍ରମିକ । ସରକାର ସେମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ଆଇନ ଆଣିବା କଥା ଆସିଲେ ମୁହଁ ଲୁଚାଉଛି କାହିଁକି ?

ଦେଶରେ ପ୍ରାୟ ୧୫୦ଟି ଶ୍ରମ ଆଇନ ରହିଛି । ବହୁଳ ଶ୍ରମ ଆଇନକୁ ସଂଶୋଧନ ପାଇଁ ସରକାର ବ୍ୟାକୁଳ ହେଉଛନ୍ତି । ବ୍ୟାକୁଳତା ପଛରେ ଶ୍ରମିକ ଦରଦି ପଣିଆ ନାହିଁ । ବରଂ ଆମ ଦେଶରେ ଶ୍ରମିକମାନଙ୍କୁ ଯେଉଁ ଯତ୍‌କିଂଚ଼ିତ ଅଧିକାର ଓ ସୁବିଧା ସୁଯୋଗ ଆଇନ ପ୍ରଦାନ କରୁଛି, ସେ ସବୁ କିପରି ବିଲୁପ୍ତ ହେବ, ଉଚ୍ଛେଦ ପାଇବ, ସେଥିପାଇଁ ସରକାର ଦିନରାତି ପରିଶ୍ରମ ଚ଼ଳେଇ ଷଡ଼ଯନ୍ତ୍ରରେ ଲିପ୍ତ ହୋଇଛନ୍ତି । ମାଲିକମାନେ କିପରି ଅତ୍ୟଧିକ ଲାଭବାନ ହେବେ, ନିଯୁକ୍ତି ନିରାପତ୍ତା ଓ ନାର୍ଯ୍ୟ ରୋଜଗାର ସର୍ତ୍ତାବଳୀ ପ୍ରଦାନରୁ ରିହାତି ପାଇବେ, ମନ ଇଚ୍ଛା ଶ୍ରମିକ ମାନଙ୍କ ନିଯୁକ୍ତି ଦେବେ, ବାହାର କରିବେ; ଏଥିପାଇଁ ସରକାର ପ୍ରାଣପଣେ ଉଦ୍ୟମ ଚ଼ଳେଇଛି ।

## ଶ୍ରମ ଆଇନ ବଦଳ ଉପରେ ଟ୍ରେଡ ୟୁନିୟନ ମତାମତ

ଟ୍ରେଡ ୟୁନିୟନମାନେ ସରକାର୍‌ଙ୍କ ଦ୍ୱାରା ଆଗତ ଶ୍ରମଆଇନ ସଂଶୋଧନ କୁ ପଦେ ପଦେ ବିରୋଧ କରନ୍ତି, ଏହାର ଅର୍ଥ ନୁହେଁ ଯେ ଶ୍ରମ ଆଇନ ଗୁଡ଼ିକର ସଂଶୋଧନ ଆବଶ୍ୟକତା ଟ୍ରେଡ ୟୁନିୟନ ମାନେ ଆଦୌ ଅନୁଭବ କରନ୍ତି ନାହିଁ । ଶ୍ରମ ଆଇନ ସଂଶୋଧିତ ହେବା ଦରକାର । କିନ୍ତୁ ଏହା କେଉଁ ଲକ୍ଷରେ ସଂଶୋଧନ ହେବ ? ଏହାହିଁ ଟ୍ରେଡ ୟୁନିୟନ ଆନ୍ଦୋଳନ ନିକଟରେ ବଡ଼ ପ୍ରଶ୍ନ ।

ଜଗତିକରଣ, ଉଦାରିକରଣ ନୀତି ଶ୍ରମିକମାନଙ୍କ ପ୍ରତି ଅତିଶୟ ପାତର ଅନ୍ତର ପୂର୍ଣ୍ଣ ଅଟେ । ଶ୍ରମିକମନେ ଆମ ସମାଜର ଅତି ଗୁରୁତ୍ୱପୂର୍ଣ୍ଣ ଅଂଶ ବିଶେଷ ଅଟନ୍ତି । ଏଣୁ ଆଇନ ସଂଶୋଧନ ସେମାନଙ୍କ ସ୍ୱାର୍ଥପ୍ରତି ସଂବେଦନଶୀଳ, ସହାନୁଭୁତିପୂର୍ଣ୍ଣ ହେବା ସଂଗେ ସଂଗେ ସୁରକ୍ଷାତ୍ମକ ହେବା ଆବଶ୍ୟକ ।

ଶ୍ରମ ଆଇନ ଗୁଡ଼ିକୁ ତାର ପଭାବ, ପରିବ୍ୟାପ୍ତି ଓ ସୁଫଳ ଦୃଷ୍ଟିରୁ ବିଚାର କଲେ ନିସନ୍ଦେହ ଭାବେ ପୁରୁଣାକାଳିଆ ଓ ଅକାମୀ ମନେ ହେବ । ଏଣୁ ଟ୍ରେଡ ୟୁନିୟନମାନେ ବରମ୍ବାର ଅମୂଳଚୂଳ ପରିବର୍ତ୍ତନ ଦାବି କରିଛନ୍ତି । ସମସ୍ତ ଶ୍ରମିକ ଶ୍ରେଣୀ କିପରି ଆଇନ ପରିସରକୁ ଆସିବେ, ସୁବିଧା ସୁଯୋଗ ପାଇବା ପାଇଁ ଯୋଗ୍ୟ ବିବେଚିତ ହେବେ, ଏଥିପାଇଁ ଟ୍ରେଡ ୟୁନିୟନ ଆନ୍ଦୋଳନକୁ ଶ୍ରମ ଆଇନ ସଂଶୋଧନ ପାଇଁ ଦାବି କରି ଆସିଛି । ଆଇନ ଭିତରେ ଥିବା ଫାଙ୍କ ବନ୍ଦ କରିବା ପାଇଁ ସ୍ୱର ଉତ୍ତୋଳନ କରିଛି । ଉଦାହରଣ ସ୍ୱରୂପ ବୋନୋସ ପ୍ରଦାନ ଆଇନକୁ ନିଆଯାଉ । ଶ୍ରମିକମାନେ ବୋନସ୍ ପ୍ରଦାନ ଉପରେ ସିଲିଂ ପ୍ରତ୍ୟାହାର ପାଇଁ ଦାବି କରୁଛନ୍ତି । ମଜୁରୀ ପ୍ରଦାନ ଆଇନ ଓ ଅନ୍ୟାନ୍ୟ ଆଇନ କ୍ଷେତ୍ରରେ ମଧ୍ୟ ଶ୍ରମିକମାନେ ସଂଶୋଧନ ଦାବି କରୁଛନ୍ତି । ଗୁପ୍ତ ଭୋଟରେ ଟ୍ରେଡ ୟୁନିୟନ ସ୍ୱୀକୃତି ପାଇଁ ଶ୍ରମିକମାନେ ଦାବି କରୁଛନ୍ତି । କୃଷି ଶ୍ରମିକ ମାନଙ୍କ ପାଇଁ ଆଇନ ଦାବି କରାଯାଇଛି । କିନ୍ତୁ ପ୍ରତ୍ୟେକ କ୍ଷେତ୍ରରେ ସରକାର ମାଲିକମାନଙ୍କ ଚାପ ଆଗରେ ନିତୀ ସ୍ୱୀକାର କରି ଶ୍ରମିକମାନଙ୍କ ଦାବି କୁ ଏଡ଼େଇ ଯାଇଛନ୍ତି ।

## ଏକ ହୁଅ ସଂଗ୍ରାମ କର

ଭାରତୀୟ ଜନତାପାର୍ଟି ପରିଚାଳିତ ମେଣ୍ଟ ସରକାର ଶ୍ରମ ଆଇନ ସଂଶୋଧନ ପାଇଁ ଚଳେଇଥିବା ତତ୍ପରତା ଟ୍ରେଡ ୟୁନିୟନ ଅନ୍ଦୋଳନକୁ ପଂଗୁ କରିବା ଲକ୍ଷରେ ପରିଚାଳିତ ହେଉଛି । ବଜାର ଅର୍ଥନୀତିର ସ୍ୱାର୍ଥ, ଆନ୍ତର୍ଜାତିକ ଲଗାଣ ପୁଂଜି ଓ ଆମ ଦେଶର ଏକଚାଟିଆ ପୁଂଜିର ସ୍ୱାର୍ଥ ସେମାନଙ୍କୁ ଶ୍ରମ ଆଇ ସଂସ୍କାର ପାଇଁ ପ୍ରେରିତ କରିଛି । ଅତୀତରେ ଏଥିପାଇଁ ଚେଷ୍ଟା ବିଫଳ ହୋଇଥିଲେ ହେଁ ଏବର ଚେଷ୍ଟା ଏକଚାଟିଆ ଓ ବିଦେଶୀ ଲଗାଣ ପୁଂଜି ଏବଂ ଫଣ୍ଡ-ବ୍ୟାଙ୍କ ସହ ସାମିଲ ବିଧିବଦ୍ଧ ଷଡ଼ଯନ୍ତ୍ରର ଅଂଶ ବିଶେଷ ଅଟେ ।

ଏହି ଗଭୀର ଷଡ଼ଯନ୍ତ୍ରକୁ ଶ୍ରମିକ ଶ୍ରେଣୀ ଓ ତାର ଟ୍ରେଡ ୟୁନିୟନ ଆନ୍ଦୋଳନ ହୃଦୟଙ୍ଗମ କରିବା ଦରକାର । ଦ୍ୱିତୀୟ ଶ୍ରମ କମିସନ ନିଯୁକ୍ତ କରି

ସେଥିପାଇଁ ବିଧିବଦ୍ଧ ପଦକ୍ଷେପ ସ୍ଥିର କରାଇବା ଘଟଣା ଆମ ଦେଶର ଶ୍ରମିକଶ୍ରେଣୀକୁ ଶକ୍ତିଥିଲେ ପରିସ୍ଥିତିର ମୁକାବିଲା କର ବୋଲି ଆହ୍ୱାନ ଦେଇଛି । ଏବେ ପ୍ରଶ୍ନ ହେଉଛି, ଶ୍ରମିକ ଶ୍ରେଣୀ ଓ ତାର ଆନ୍ଦୋଳନ ନିଜର ଅଧିକାର, ସୁଖ ସୁବିଧା ସୁରକ୍ଷା ପାଇଁ ଏହି ଗଭୀର ଷଡ଼ଯନ୍ତ୍ର ବିରୁଦ୍ଧରେ ମୁଣ୍ଡ ଟେକିବ କି ନିରବ ରହିବ । ଶ୍ରମିକମାନଙ୍କ ଉପରେ ଆସନ୍ନ ଏହି ଆକ୍ରମଣ ଉଦାରୀକରଣ ଜଗତିକରଣ ଆଦି ଆତ୍ମଘାତି ନୀତିର ଏକ ଅଂଶ ବିଶେଷ ଅଟେ । ଏଣୁ ଏହା ବିରୁଦ୍ଧରେ ଆନ୍ଦୋଳନ ଅପରିହାର୍ଯ୍ୟ ହୋଇ ପଡ଼ିଛି ।

ଏହି ଆହ୍ୱାନକୁ ଦେଶବ୍ୟାପୀ ଏକତାବଦ୍ଧ ଶ୍ରମିକ ଆନ୍ଦୋଳନ ହିଁ ମୁକାବିଲା କରିବା ପାଇଁ ସକ୍ଷମ ହେବ । ଏହି ଆନ୍ଦୋଳନ ଅଧିକରୁ ଅଧିକ ବ୍ୟାପକ ଭିତ୍ତିରେ ଗଢ଼ି ଉଠିବା ଦରାକର । ଏକତାବଳ ସଂଗ୍ରାମ ଗଢ଼ି ତୋଳିବା ପାଇଁ, ଜଘନ୍ୟ ଆକ୍ରମଣ ବିରୁଦ୍ଧରେ ଶ୍ରମିକ ଶ୍ରେଣୀର ବାର୍ତ୍ତା ଦେଶ ସାରା ପ୍ରତ୍ୟେକ ଗଳି କନ୍ଦିରେ ପହଞ୍ଚିବା ଦରକାର । କାଳକ୍ଷେପଣ ନକରି ଦେଶସାରା ଶକ୍ତିଶାଳୀ ଅଭିଯାନ ଆରମ୍ଭ ହେବା ଆବଶ୍ୟକ । ଅତୀତର ଅଭିଜ୍ଞତା ଆମ ପାଖରେ ରହିଛି । ଶକ୍ତିଶାଳୀ ଏକତାବଦ୍ଧ ଟ୍ରେଡ ୟୁନିୟନ ଆନ୍ଦୋଳନ ହିଁ ଗଭୀର ଷଡ଼ଯନ୍ତ୍ରକୁ ପରାସ୍ତ କରିପାରିବ । ଆମର ବିଶ୍ୱାସ ଶ୍ରମିକ ଶ୍ରେଣୀ ଜାଗ୍ରତ ହେବେ; ଐକ୍ୟବଦ୍ଧ ଆନ୍ଦୋଳନ ବଳରେ ସରକାରଙ୍କୁ ଶ୍ରମିକ ବିରୋଧି ହୀନ କୌଶଳ ଅନୁସରଣରୁ ଓହରିବା ପାଇଁ ବାଧ୍ୟ କରିପାରିବେ ।



ଲେଖକ ସ୍ୱଦେଶ ଦେବରାୟ, ଓଡ଼ିଆ ସି.ଆଇ.ଟି.ୟୁ. ରାଜ୍ୟ କମିଟି, ୨୫୧, ଖାରବେଳ ନଗର, ୟୁନିଟ୍-୩, ଭୁବନେଶ୍ୱର - ୭୫୧୦୦୧ ଦ୍ୱାରା ପ୍ରକାଶିତ, ମହାପାତ୍ର ପ୍ରିଣ୍ଟିଂ ପ୍ରେସ୍ ଦ୍ୱାରା ମୁଦ୍ରିତ, ମୂଲ୍ୟ : ୨ ଟଙ୍କା ।

